## ବହାର ଓ ଓଡ଼ିଶା ସ୍କୁଲମାନଙ୍କ ବ୍ୟବହାରନିମନ୍ତେ ମ୍ୟାକ୍‌ମିଲନ୍ କମ୍ପାନୀ-କୃତ ଓଡ଼ିଆ ପାଠ୍ୟ-ପୁସ୍ତକାବଳୀ ।



### ସାହିତ୍ୟ ଓ ବ୍ୟାକରଣ :—

ବର୍ଣ୍ଣବୋଧ ... ସାର୍ ମଧୁସୂଦନ ରାଓ ବାହାଦୁର ପ୍ରଣୀତ ..

ଶିଶୁବୋଧ (୨ୟ ବର୍ଷର ଶିଶୁଶ୍ରେଣୀ ନିମନ୍ତେ) ଏତଦ ଏତଦ ... ୵

ବାଳବୋଧ (୧ମ ଓ ୨ୟ ମାନ ନିମନ୍ତେ) ଏତଦ ଏତଦ ... ୵

ବାଳବୋଧ (୧ମ ଓ ୨ୟ ମାନ ନିମନ୍ତେ)... ଏତଦ ସଙ୍କଳିତ ସଂଶୋଧିତ ସଂସ୍କରଣ } ୵

ସାହିତ୍ୟ କୁସୁମ (୩ୟ ଓ ୪ର୍ଥ ମାନ ନିମନ୍ତେ) ... ଏତଦ ଏତଦ ୵

ସାହିତ୍ୟ ପ୍ରସଙ୍ଗ (୫ମ ଓ ୬ଷ୍ଠ ମାନ ନିମନ୍ତେ) ... ଏତଦ ଏତଦ ୵

ବର୍ଣ୍ଣବୋଧ (୧ମ ଓ ୨ୟ ବର୍ଷ ନିମନ୍ତେ) ଉ. ମାର୍ସଡେନ୍ ଓ ରାମଚନ୍ଦ୍ର ରାଓ୍ କୃତ ୵

କଥାବଳୀ (୧ମ ଓ ୨ୟ ମାନ ନିମନ୍ତେ) ... ଇ. ମାର୍ସଡେନ ଓ ଚନ୍ଦ୍ରମୋହନ ମହାରଣା, ବି. ଏ. ଙ୍କ କୃତ ... ୵

କଥାବଳୀ (୩ୟ ଓ ୪ର୍ଥ ମାନ ନିମନ୍ତେ) ... ଏତଦ ଏତଦଙ୍କ କୃତ... ୵

ସାହିତ୍ୟ ପାଠ (୫ମ ଓ ୬ଷ୍ଠ ମାନ ନିମନ୍ତେ)... ଜଗନ୍ନାଥ ମହାପାତ୍ର ଓ ମୃତ୍ୟୁଞ୍ଜୟ ରଥ କୃତ ... ୵

* ସୁଗବୋଧବ୍ୟାକରଣ (୫ମ ଓ ୬ଷ୍ଠ ମାନ ନିମନ୍ତେ) ମୃତ୍ୟୁଞ୍ଜୟ ରଥ କୃତ ୵

ଓଡ଼ିଆ ବ୍ୟାକରଣ (୫ମ ଓ ୬ଷ୍ଠ ମାନ ନିମନ୍ତେ) ମଧୁସୂଦନ ଦାଶ କୃତ ୵

ଓଡ଼ିଆ ବ୍ୟାକରଣ (୫ମ ଓ ୬ଷ୍ଠ ମାନ ନିମନ୍ତେ) । (ଏଥିରେ ଅପେକ୍ଷିତ ଅନୁସୃତ) ... ଜଣେକ ବହୁଦର୍ଶୀ ଶିକ୍ଷକ ଦ୍ୱାରା ସଙ୍କଳିତ ... ୵

ରଚନାଶିକ୍ଷା ... ଚନ୍ଦ୍ରମୋହନ ମହାରଣା, ବି. ଏ. ଙ୍କ କୃତ ... ୵

ଓଡ଼ିଆ ଟ୍ରାନ୍ସଲେସନ୍ ଏବଂ ରିଟ୍ରାନ୍ସଲେସନ୍ ... ଡବ୍ଲୁ. ଡବ୍ଲୁ. ହେଣ୍ଡରସନ୍, ଏମ୍. ଏ. ଙ୍କ କୃତ ... ... ... ...

ପ୍ରବନ୍ଧମାଳା ... ସାର୍ ମଧୁସୂଦନ ରାଓ ବାହାଦୁର ପ୍ରଣୀତ ... ୵

### ଗଣିତ :—

ପାଟୀଗଣିତ ସଂକ୍ଷିପ୍ତ ପ୍ରଶ୍ନମାଳା ଅଭ୍ୟାସସହ (୧ମ ଓ ୨ୟ ମାନ ନିମନ୍ତେ) } ... ଶିକ୍ଷା ବିଭାଗ ...

# ସାହିତ୍ୟପାଠ

ପ୍ରଥମ ଓ ଦ୍ୱିତୀୟ ଭାଗ

ପଞ୍ଚମ ଓ ଷଷ୍ଠମାନ ନିମନ୍ତେ

ଶ୍ରୀ ଜଗନ୍ନାଥ ମହାପାତ୍ର ବି. ଏ.

ଏବଂ

ଶ୍ରୀ ମୃତ୍ୟୁଞ୍ଜୟ ରଥ ବାଣୀଭୂଷଣ କାବ୍ୟତୀର୍ଥ

କର୍ତ୍ତୃକ ପ୍ରଣୀତ

ପ୍ରଥମ ମୁଦ୍ରଣ

ମାକମିଲାନ ଏଣ୍ଡ କୋ., ଲିମିଟେଡ୍,

କଲିକତା, ବୋମ୍ବାଇ, ମାନ୍ଦ୍ରାଜ, ଲଣ୍ଡନ

୧୯୧୮

# ସୂଚୀପତ୍ର ।

## ପଞ୍ଚମମାଳ

### (ପ୍ରଥମ ଭାଗ)

## ଷଣ୍ଢମାନ ( ଦ୍ୱିତୀୟ ଭାଗ) ।

# ସାହିତ୍ୟପାଠ ।

---

## ପ୍ରଥମ ଭାଗ ।

### ଧର୍ମବୁଦ୍ଧି ଓ ପାପବୁଦ୍ଧି ।



କୌଣସି ରାଜ୍ୟରେ ଧର୍ମବୁଦ୍ଧି ଓ ପାପବୁଦ୍ଧି ନାମକ ଦୁଇ ଜଣ ବନ୍ଧୁ ଥିଲେ । ଧର୍ମବୁଦ୍ଧି ସୁଚତୁର, ବିଜ୍ଞ ଏବଂ ଧର୍ମପରାୟଣ ଥିଲା । କିନ୍ତୁ ପାପବୁଦ୍ଧି ନିତାନ୍ତ ମୂର୍ଖ ଓ ଅଧର୍ମାଚାରୀ ଥିଲା । ଦିନେ ପାପବୁଦ୍ଧି ଭାବିଲା "ଏକେତ ମୁଁ ମୂର୍ଖ; ପୁଣି ଦରିଦ୍ର । ଏ ବହୁ କୁଟୁମ୍ବଙ୍କୁ କିପରି ପାଳନ କରିବ? ଏହି ଧର୍ମବୁଦ୍ଧି ଯଦି ବିଦେଶକୁ ଯାନ୍ତା ତାହାହେଲେ ମୁଁ ତାହା ସାହାଯ୍ୟରେ ଯଥେଷ୍ଟ ଅର୍ଥ ଉପାର୍ଜ୍ଜନ କରି ଶେଷରେ ତାହାକୁ ମଧ୍ୟ ପ୍ରତାରିତ କରି ସମସ୍ତ ଧନ ହସ୍ତଗତ କରନ୍ତି । ଏପରି କଲେ ମୋହର ଦୁଃଖ ଦାରିଦ୍ର୍ୟ ଅଚିରେ ଦୂରୀଭୂତ ହୋଇଯାନ୍ତା ।" ମନେ ମନେ ଏପ୍ରକାର ଆଶା କରି ସେ ଦିନେ ଯାଇ ଧର୍ମ-ବୁଦ୍ଧିକୁ କହିଲା "ମିତ୍ର ! ଯେତେବେଳେ ତୁମ୍ଭେ ବୃଦ୍ଧ ହୋଇଯିବ ତେତେ-ବେଳେ ଆପଣାର ପୂର୍ବ ଚରିତ କଣ ସ୍ମରଣ କରିବ? ବିଦେଶକୁ ଯାଇ ନ ଥିଲେ କି କି ଆଶ୍ଚର୍ଯ୍ୟ କଥା ବା ମାହାତ୍ମ୍ୟ ଆତ୍ମୀୟ ସ୍ୱଜନଙ୍କୁ ଶୁଣାଇବ? କଥାରେ ଅଛି ପରା :—

ଯାବତ ନ କରେ ଜନ ବିଦେଶେ ଭ୍ରମଣ
ନ ଲଭେ ତାବତ କେବେଁ ଶିଳ୍ପ, ଜ୍ଞାନ, ଧନ ।"

ଧର୍ମବୁଦ୍ଧି ବନ୍ଧୁର ଏପ୍ରକାର ପ୍ରସ୍ତାବ ଶୁଣି ଅତ୍ୟନ୍ତ ଆନନ୍ଦିତ ହେଲା ଏବଂ ଶୁଭଦିନରେ ଗୁରୁଜନମାନଙ୍କଠାରୁ ଅନୁମତି ନେଇ ପାପବୁଦ୍ଧି ସହିତ ଦେଶାନ୍ତରକୁ ଯାତ୍ରା କଲା । ସେଠାରେ ପାପବୁଦ୍ଧି ଧର୍ମବୁଦ୍ଧି ଯୋଗୁଁ ବହୁଧନ ଉପାର୍ଜ୍ଜନ କଲା । କିଛିକାଳଉତ୍ତାରେ ଦୁଇବନ୍ଧୁ ବହୁଅର୍ଥ ଉପାର୍ଜ୍ଜନ କରି ଉତ୍ତମଦିନରେ ନିଜ ନିଜ ଗୃହକୁ ପ୍ରତ୍ୟାଗମନ କଲେ । ଗୃହ ସନ୍ନିକଟ ହେବାର ଦେଖି ପାପବୁଦ୍ଧି ଧର୍ମବୁଦ୍ଧିକୁ ଡାକି କହିଲା "ଭାଇ, ଏ ସମସ୍ତ ଧନ ଏହିକ୍ଷଣି ଗୃହକୁ ନେଇଯିବା ଉଚିତ ନୁହେ । ଆମ୍ଭ ଦୁହିଙ୍କର ତ ବହୁ କୁଟୁମ୍ବ । ବନ୍ଧୁବାନ୍ଧବମାନେ ଜାଣିଲେ ମଧ୍ୟ ସମୟ ସମୟରେ ମାଗି ଯାଚି ନେଇ ଶେଷ କରିଦେବେ । ତାହାହେଲେ ଏହି ବନମଧ୍ୟରେ ଗୋଟିଏ ନିର୍ଜ୍ଜନ ସ୍ଥାନରେ କିଛି ଧନ ରଖିଦେଇ ଯାଇଥିବା । ଆବଶ୍ୟକ ହେଲେ ପୁଣି ଏଠାକୁ ଆସି

ଘେନଯିବା ।” ଧର୍ମବୁଦ୍ଧି ଏ ପ୍ରସ୍ତାବରେ ସମ୍ମତ ପ୍ରକାଶ କରିବାରୁ ସେହିପରି କରି ଦୁହେଁ ନିଜ ନିଜ ଗୃହକୁ ପ୍ରସ୍ଥାନ କଲେ ଏବଂ କିଛିକାଳ ସୁଖରେ ଅବସ୍ଥାନ କଲେ ।

ଏଥିମଧ୍ୟରେ ଦିନେ ପାପବୁଦ୍ଧି ନିଶୀଥସମୟରେ ଏକାକୀ ସେ ସ୍ଥଳକୁ ଆସି ଭୂମି ଖନନପୂର୍ବକ ସମସ୍ତ ପ୍ରୋଥିତ ଧନ ଗ୍ରହଣ କଲା ଏବଂ ପୂର୍ବବତ୍ ଗର୍ତ୍ତପୂରଣ କରି ଚାଲିଗଲା । ଅଉଦିନେ ସେହି ପୁଣି ଧର୍ମବୁଦ୍ଧି ନିକଟକୁ ଯାଇ କହିଲା “ମିତ୍ର ! ବହୁକୁଟୁମ୍ବ ଯୋଗୁଁ ଆମ୍ଭେ ଦୁହେଁ ବଡ଼ କଷ୍ଟ ପାଉଥାଉଁ ; ଚାଲ ଯିବା, କିଛି ଧନ ସେଠାରୁ ଆଣିବା ।” ଧର୍ମବୁଦ୍ଧି ଏଥିରେ ସମ୍ମତ ହେବାରୁ ଉଭୟେ ସେ ସ୍ଥାନକୁ ଗଲେ ଏବଂ ଭୂମି ଖନନ କରି ସୁଦ୍ଧା କିଛି ପାଇଲେ ନାହିଁ । ତହିଁ କପଟୀ ପାପବୁଦ୍ଧି ଆପଣା ମୁଣ୍ଡ କୋଡ଼ି କହିବାକୁ ଲାଗିଲା “ହେ ଧର୍ମବୁଦ୍ଧି! ତୁମ୍ଭେ ନିଶ୍ଚୟ ଏଧନ ହରଣ କରିଅଛ । ଅନ୍ୟ କେହି ହୋଇଥିଲେ ପୁନର୍ବାର ଗର୍ତ୍ତପୂରଣ କାହିଁକି କରିଥାନ୍ତା ! ତେବେ ମୋତେ ମୋ ଅର୍ଦ୍ଧକ ଦିଅ । ନୋହିଲେ ବିଚାରାଳୟରେ ଜଣାଇ ଏହାର ପ୍ରତିକାର କରିବି ।” ଧର୍ମବୁଦ୍ଧି କହିଲା “ରେ ଦୁଷ୍ଟ! ଏପରି କଥା ଆଉ କହ ନାହିଁ, ମୁଁ କେବେ ଏପରି ଚୌରକର୍ମ କରେ ନାହିଁ ।”

ଏହିରୂପେ ସେ ଦୁହେଁ ବିବାଦ କରି ବିଚାରାଳୟରେ ଉପସ୍ଥିତ ହେଲେ । ବିଚାରପତି ସମସ୍ତ ଘଟନା ଶ୍ରବଣ କରି ଯେତେବେଳେ ସେ ଉଭୟଙ୍କୁ ଶପଥ କରିବାକୁ ଆଦେଶ ପ୍ରଦାନ କଲେ ତେତେବେଳେ ପାପବୁଦ୍ଧି ଦଣ୍ଡାୟମାନ ହୋଇ କହିଲା “ଧର୍ମାବତାର । ଏ ଉଚିତ ବିଚାର ହେଉ ନାହିଁ । ଶାସ୍ତ୍ରରେ ଏହି ବିଧି ଅଛି,—

ଦୁଇ ଦଳ ମଧ୍ୟେ ବିବାଦ ଘଟିଲେ
ଆଗେ ଲୋଡ଼ା ଲେଖ୍ୟମାନ,
ତଦଭାବେ ସାକ୍ଷୀ, ସାକ୍ଷୀ-ଅଭାବରେ
ହୁଏ ଶପଥ-ବିଧାନ ।

ସ୍ୱୟଂ ବୃକ୍ଷଦେବତା ମୋହର ଏ ବିଷୟରେ ସାକ୍ଷୀ ଅଛନ୍ତି । ସେ ଆମ୍ଭ ଦୁହିଙ୍କ ମଧ୍ୟରେ କିଏ ଚୋର କିଏ ସାଧୁ ତାହା ଅବଶ୍ୟ କହିଦେବେ ।” ବିଚାରପତି ଏହା ଶୁଣି କହିଲେ “ତୁମ୍ଭେ ନ୍ୟାୟସଙ୍ଗତ କଥା କହୁଅଛ, ଆମ୍ଭର ମଧ୍ୟ ଏ ବିଷୟରେ ବିଶେଷ କୌତୂହଳ ହେଉଅଛି । ତେବେ କାଲି ସକାଳେ ତୁମ୍ଭେ ଦୁହେଁ ଆମ୍ଭ ସହିତ ସେ ସ୍ଥଳକୁ ଯିବ ।”

ଏଥିମଧ୍ୟରେ ପାପବୁଦ୍ଧି ନିଜ ଗୃହକୁ ଆସି ପିତାଙ୍କୁ କହିଲା “ପିତଃ! ମୁଁ ଧର୍ମବୁଦ୍ଧିର ସମସ୍ତ ଧନ ଅପହରଣ କରିଅଛି । ତୁମ୍ଭର କଥାରେ ସେତକ ଆମ୍ଭର ବୋଲି ପ୍ରମାଣିତ ହେବ, ନୋହିଲେ ସେହି ଧନ ସହିତ ଆମ୍ଭର ପ୍ରାଣ ମଧ୍ୟ ଯିବ ।” ପିତା ଉଦ୍‌ବେଗପୂର୍ଣ୍ଣହୃଦୟରେ ପଚାରିଲେ “ବତ୍ସ ! ଯାହା ହେଲେ ଶୀଘ୍ର କହି ମୋତେ କଣ କହିବାକୁ ହେବ ?” ପାପବୁଦ୍ଧି କହିଲା “ସେଠାରେ ଗୋଟିଏ କୋଟରଯୁକ୍ତ ବଡ଼ ଶମୀବୃକ୍ଷ ଅଛି । ତୁମ୍ଭେ ଆଗରୁ ଯାଇ ସେହି କୋଟର ମଧ୍ୟରେ ଲୁଚି ରହିଥିବ । କାଲି ସକାଳେ ଯେତେ-ବେଳେ ମୁଁ ସତ୍ୟଶ୍ରବଣ କରାଇବି ତେତେବେଳେ ତୁମ୍ଭେ ‘ଧର୍ମବୁଦ୍ଧି ଚୋର’ ବୋଲି କହିବ ।”

ଏହା କାର୍ଯ୍ୟରେ ପରିଣତ କରାଇ ପାପବୁଦ୍ଧି ତହିଁଆରଦିନ ସକାଳେ ପରିଷ୍କୃତ ପରିଚ୍ଛନ୍ନ ହୋଇ ଧର୍ମବୁଦ୍ଧିର ପଛେ ପଛେ ବିଚାରପତିଙ୍କ ସହିତ ସେ ସ୍ଥାନକୁ ଗଲା ଏବଂ ଉଚ୍ଚସ୍ୱରରେ ଦୂରକୁ ଶୁଣାଇ କହିଲା “ହେ ବନଦେବତା ! ଆମ୍ଭ ଦୁହିଁଙ୍କ ମଧ୍ୟରେ କିଏ ପ୍ରକୃତ ଚୋର, କହିଦିଅ ।” ପାପବୁଦ୍ଧିର ପିତା ସେହି କୋଟର ମଧ୍ୟରେ ଥାଇ କହିଲା “ଧର୍ମବୁଦ୍ଧି ଚୋର ହୋଇଅଛି ।” ଏହା ଶୁଣି ବିଚାରପତି ଯେତେବେଳେ ଶାସ୍ତ୍ରବିଧି ଅନୁସାରେ ଧର୍ମବୁଦ୍ଧିର ଅପରାଧୋଚିତ ଦଣ୍ଡବିଧାନ କରିବାକୁ ମନଃସ୍ଥ କଲେ, ତେତେବେଳେ ଧର୍ମବୁଦ୍ଧି ହଠାତ୍ ସେ କୋଟରମଧ୍ୟରେ ଛଣ କୁଟା କାଠି ଆଦି ଦାହ୍ୟ ପଦାର୍ଥ ପୂରାଇ ଅଗ୍ନି ଲଗାଇଦେଲା । କୋଟର ଗର୍ଭକୁ ଜଳିଗଲାକ୍ଷଣି, ପାପବୁଦ୍ଧିର ପିତା ତା ମଧ୍ୟରୁ ଅର୍ଦ୍ଧଦଗ୍ଧ ଅବସ୍ଥାରେ ବାହାରିପଡ଼ି ଦାହଯନ୍ତ୍ରଣାରେ ଅତ୍ୟନ୍ତ ବ୍ୟାକୁଳ ହୋଇ କରୁଣସ୍ୱରରେ କହିଲା “ମୋହର ପୁତ୍ର ପାପବୁଦ୍ଧିର ଏସବୁ

କାଣ୍ଡ ।” ବଣ୍ଟିରପଢ ଆପବୁଦ୍ଧିର ପାପ ଉପରେ ପୁଣି ପାପ ଦେଖି ସେହି ଶମୀବୃକ୍ଷ ଶାଖାରେ ତାହାକୁ ଫାଶିଦଅାଇ ଧର୍ମବୁଦ୍ଧିଙ୍କୁ ପ୍ରଶଂସା କରି ଚାଲିଗଲେ ।

ଏଥିପାଇଁ କୁହାଯାଏ—ବୁଦ୍ଧିମାନ୍ ଲୋକର ଉପାୟ ଚିନ୍ତା କରିବାବେଳେ ଅପାୟକୁ ମଧ୍ୟ ଚିନ୍ତା କରିବା ଉଚିତ । ପାପବୁଦ୍ଧି କେବଳ ଉପାୟ ଚିନ୍ତା କରିଥିଲା, ଅପାୟ-ପକ୍ଷ ଅବେଁ ଭାବି ନ ଥିଲା । ତେଣୁ ତାହାଙ୍କ ଉପଯୁକ୍ତ ଫଳ ପ୍ରାପ୍ତ ହେଲା ।

---

## ଦୁର୍ଯ୍ୟୋଧନର ଘୋଷଯାତ୍ରା ।

ଦ୍ୟୂତରେ ହୃତସର୍ବସ୍ୱ ପାଣ୍ଡବମାନେ ଯେତେବେଳେ ରାଜଧାନୀରୁ ନିର୍ବାସିତ ହୋଇ ନଗର ସନ୍ନିହିତ ଦ୍ୱୈତବନ-ସରୋବର ତଟରେ ବନବାସୀ ବ୍ରାହ୍ମଣମାନଙ୍କ ସହିତ ଅବସ୍ଥାନ କରୁଥିଲେ, ସେହି ସମୟରେ ଦିନେ ଦୁଷ୍ଟମତି ଶକୁନି କର୍ଣ୍ଣଙ୍କ ସହିତ ଦୁର୍ଯ୍ୟୋଧନଙ୍କୁ ଏକତ୍ର ଉପବିଷ୍ଟ ଦେଖି ଏହିପରି କୁମନ୍ତ୍ରଣା ଦେଲେ “ହେ କୁରୁଶ୍ରେଷ୍ଠ! ତୁମ୍ଭେ ବୁଦ୍ଧିକୌଶଳରେ ଯୁଧିଷ୍ଠିରଙ୍କଠାରୁ ରାଜଲକ୍ଷ୍ମୀ ଅପହାର କରିଅଛ । ବର୍ତ୍ତମାନ ତୁମ୍ଭେ ସୂର୍ଯ୍ୟତୁଲ୍ୟ ପ୍ରତାପଶାଳୀ ଏବଂ ସର୍ବଲୋକପୂଜ୍ୟ । ପାଣ୍ଡବମାନେ ଏତେବେଳେ ଶ୍ରୀଭ୍ରଷ୍ଟ ଏବଂ ସର୍ବସମ୍ପଦବର୍ଜ୍ଜିତ । ତୁମ୍ଭଙ୍କ ଶ୍ରୀସମ୍ପନ୍ନ ଦେଖିଲେ ସେମାନେ ଅବଶ୍ୟ ମର୍ମବ୍ୟଥା ଅନୁଭବ କରିବେ । ଏ ସଂସାରରେ ଶତ୍ରୁଙ୍କୁ ଦୁର୍ଦ୍ଦଶାଗ୍ରସ୍ତ ଦେଖିବାଠାରୁ ଅଧିକ ସୁଖର ବିଷୟ ଆଉ କଣ ଅଛି? ଅତଏବ ସେମାନଙ୍କ ସହିତ ସାକ୍ଷାତ୍କାର ସର୍ବଥା ବିଧେୟ ।” କର୍ଣ୍ଣ ଏ ପ୍ରସ୍ତାବରେ ସାନନ୍ଦରେ ଯୋଗଦେବାର ଦେଖି ଦୁର୍ଯ୍ୟୋଧନ କହିଲେ “ହେ କର୍ଣ୍ଣ! ବନ ମଧ୍ୟରେ ସେମାନଙ୍କୁ ଦୁର୍ଦ୍ଦଶାପନ୍ନ ଏବଂ ସେମାନେ ମୋତେ ଅଲୌକିକ ଶ୍ରୀସମ୍ପନ୍ନ ଦେଖିଲେ ମୁଁ ସୁଖୀ ହେବି ସତ୍ୟ, କିନ୍ତୁ ଦ୍ୱୈତବନକୁ କିପରି ବା ଯାତ୍ରା କରିବା । ବିନା ପ୍ରୟୋଜନରେ ଦ୍ୱୈତବନ ଅଭିଗମନ ନିମିତ୍ତ ମହାରାଜଙ୍କଠାରୁ ଅନୁମତି ମିଳିବା ଅସମ୍ଭବ । ତୁମ୍ଭେ ଶକୁନି ଏବଂ ଦୁଃଶାସନ

ସହିତ ଅଳ୍ପ ପରାମର୍ଶ କରି ଏହାର ଉପାୟ ନିର୍ଦ୍ଧାରଣ କର ।" ଦୁର୍ଯ୍ୟୋଧନଙ୍କ ବାକ୍ୟରେ ସମସ୍ତେ ସ୍ୱ ସ୍ୱ ଭବନକୁ ପ୍ରସ୍ଥାନ କଲେ ।

ତହିଁଆରଦିନ କର୍ଣ୍ଣ ଦୁର୍ଯ୍ୟୋଧନଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ସହର୍ଷିତ-ବଦନରେ କହିଲେ "ମହାରାଜ! ଏହି ଉପାୟ ସ୍ଥିର କରିଅଛୁଁ ଯେ ଦ୍ୱୈତବନ ନିକଟରେ ଅନେକ ଗୋପାଳପଲ୍ଲୀ ଅଛି । ସେସବୁର ତତ୍ତ୍ୱାବଧାନ ରାଜାଙ୍କର ଅବଶ୍ୟ କର୍ତ୍ତବ୍ୟ । ଅତଏବ ଆମ୍ଭେମାନେ ଘୋଷଯାତ୍ରା ଛଳରେ ସେଠାକୁ ଯାତ୍ରା କରିବା । ଏଥିରେ ମହାରାଜ ଅବଶ୍ୟ ଅନୁମତି ଦେବେ ।"

ଅନନ୍ତର ଗୋଧନ ପରିଦର୍ଶନ ନିମିତ୍ତ ଘୋଷଯାତ୍ରାର ପ୍ରସ୍ତାବ ମହାରାଜଙ୍କ ନିକଟରେ ଜଣାଇ କୌଶଳରେ ତାହାଙ୍କଠାରୁ କଥଞ୍ଚିତ୍ ଅନୁମତି ଆଣି ଦୁର୍ବୁଦ୍ଧି ଦୁର୍ଯ୍ୟୋଧନ ସୁଭଗମ୍ମନ୍ୟ କର୍ଣ୍ଣାଦି ଆତ୍ମୀୟ ସ୍ୱଜନ ଏବଂ ବିବିଧାଭରଣଭୂଷିତ ବଧୂଜନଙ୍କୁ ଘେନି ମହା ସମାରୋହରେ ଦ୍ୱୈତବନକୁ ଯାତ୍ରା କଲେ । ସହସ୍ର ସହସ୍ର ପଦାତି, ସହସ୍ର ସହସ୍ର ଅଶ୍ୱ ଏବଂ ହସ୍ତୀ, ତାଙ୍କ ପଛେ ପଛେ ବହୁସଂଖ୍ୟକ ବଣିକ, ବନ୍ଦୀ ଓ ମୃଗୟାଶୀଳ ଲୋକ ମଧ୍ୟ ଗମନ କଲେ । ସେ ମହା ଜନତା-ସଂଯୋଗେ ବର୍ଷାକାଳୀନ ମହା ଝଟିକାର ଘୋର ଶବ୍ଦ ପ୍ରାୟ ମହା କୋଲାହଳଧ୍ୱନି ସମୁତ୍ଥିତ ହେଲା ।

ଅନନ୍ତର ରାଜା ଦୁର୍ଯ୍ୟୋଧନ ବହୁ ଅରଣ୍ୟପଥ ଅତିକ୍ରମପୂର୍ବକ ଶଂସିତ ଗୋପାଳପଲ୍ଲୀରେ ଉପସ୍ଥିତ ହୋଇ ନବନିର୍ମିତ ଗୃହମାନଙ୍କରେ ଅବସ୍ଥାନ କଲେ ଏବଂ କିଛିଦିନ ଗୋଧନ ପରିଦର୍ଶନ କରୁ କରୁ ଦ୍ୱୈତବନ-ସରୋବର ନିକଟରେ ଉପସ୍ଥିତ ହୋଇ ତାହାର ତଟଦେଶରେ କ୍ରୀଡ଼ାଗୃହ ନିର୍ମାଣ କରିବା ନିମନ୍ତେ ଭୃତ୍ୟମାନଙ୍କୁ ଆଦେଶ ଦେଲେ । କିନ୍ତୁ ସେଥିପୂର୍ବରୁ ଗନ୍ଧର୍ବରାଜ ସ୍ୱଜନ-ପରିବୃତ ହୋଇ ତହିଁରେ ବିହାର କରି ଆସୁଥିଲେ ; ତେଣୁ ତାହା ଗନ୍ଧର୍ବରକ୍ଷୀଗଣଙ୍କ ଦ୍ୱାରା ସୁରକ୍ଷିତ ଥିଲା । ଦୁର୍ଯ୍ୟୋଧନଙ୍କ ଭୃତ୍ୟମାନେ ସେ ସ୍ଥାନକୁ ଧାବମାନ ହେବାର ଦେଖି ଦ୍ୱାରପାଳମାନେ ଭିତରେ ପ୍ରବେଶ କରିବାକୁ ନିଷେଧ କଲେ । ମାତ୍ର ସେମାନେ ନିଷେଧ ନ ମାନି ରାଜାଜ୍ଞାକ୍ରମେ ଗନ୍ଧର୍ବ ସୈନିକମାନଙ୍କୁ ନାନାଭାବରେ ପରାଭବ ଦେଲେ । ଏ ସମ୍ବାଦ ଗନ୍ଧର୍ବରାଜ

ଚିତ୍ରସେନଙ୍କ କର୍ଣ୍ଣଗୋଚର ହୁଅନ୍ତେ ସେ କାଳବିଳମ୍ବ ନ କରି ସଶସ୍ତ୍ର ସୈନିକ-ଗଣଙ୍କ ସମଭିବ୍ୟାହାରରେ ଦ୍ୱୈତବନ ଅଭିମୁଖରେ ଧାବମାନ ହେଲେ ଏବଂ ଘୋର ସଂଗ୍ରାମରେ କର୍ଣ୍ଣ ଦୁର୍ଯ୍ୟୋଧନାଦିଙ୍କୁ ପରାଜିତ କରି ରାଜବଧୂଗଣଙ୍କ ସହିତ ବନ୍ଦୀ କଲେ । ଏହିରୂପେ ରାଜା ଦୁର୍ଯ୍ୟୋଧନଙ୍କ ସ୍ୱଜନ ସହିତ ଗନ୍ଧର୍ବରାଜଙ୍କ ଦ୍ୱାରା ଅପହୃତ ହେବାର ଦେଖି ପ୍ରବୀଣ ଅମାତ୍ୟଗଣ ଦ୍ୱୈତବନ ତୀରବାସୀ ଯୁଧିଷ୍ଠିର-ଙ୍କର ଶରଣାପନ୍ନ ହୋଇ ଅତି ଦୀନହୀନଭାବରେ କହିଲେ "ହେ ଧର୍ମରାଜ! ବର୍ତ୍ତମାନ ଚିତ୍ରସେନ ରାଜବଧୂଗଣଙ୍କ ସହିତ ରାଜା ଦୁର୍ଯ୍ୟୋଧନଙ୍କୁ ବନ୍ଦୀ କରି ନେଉଅଛନ୍ତି । ସେମାନଙ୍କୁ ବନ୍ଧନରୁ ସତ୍ୱର ମୁକ୍ତ କରନ୍ତୁ ।"

ଅସହିଷ୍ଣୁ ଭୀମସେନ ଏ କଥା ଶ୍ରବଣ କରିବାମାତ୍ରେ ସେ ଅନୁଗ୍ରହପ୍ରାର୍ଥୀ କାତରକଣ୍ଠ ବୃଦ୍ଧ ଅମାତ୍ୟଗଣଙ୍କୁ କହିଲେ "ଆମ୍ଭେମାନେ ବହୁ ଚେଷ୍ଟାରେ ସହସ୍ର ଗଜବାଜୀ ସଂଗ୍ରହ କରି ଯେଉଁ କର୍ମ ସମ୍ପାଦନ କରିଥାନ୍ତୁ, ଏବେ ତାହା ଆମ୍ଭ-ମାନଙ୍କର ହିତୈଷୀ ଗନ୍ଧର୍ବରାଜ ସମ୍ପନ୍ନ କରିଅଛନ୍ତି ; ଦୁର୍ମତି ଆମ୍ଭମାନଙ୍କୁ ଭିକ୍ଷୁକ ଦେଖି ଆପଣାର ଐଶ୍ୱର୍ଯ୍ୟ ପ୍ରଦର୍ଶନ କରିବାଲାଗି ଆସିଥିଲା, ତାହାର ଏହି ଉପଯୁକ୍ତ ପ୍ରତିଫଳ ! ମନୁଷ୍ୟର ମନୋରଥ କଦାପି ସଫଳ ହୁଏ ନାହିଁ । ସେ ମନେ ମନେ ଏକପ୍ରକାର ଚିନ୍ତା କରେ, ମାତ୍ର ତାହାର ଫଳ ଅନ୍ୟପ୍ରକାର ହୋଇଯାଏ ।" ଶାନ୍ତମତି ଯୁଧିଷ୍ଠିର ଭୀମସେନଙ୍କର ଏପରି କଠୋରକଥା ଶ୍ରବଣ କରି କହିଲେ "ଜ୍ଞାତିମାନଙ୍କ ମଧ୍ୟରେ କଳହ ହୋଇଥାଏ; କିନ୍ତୁ ତାହାବୋଲି କୁଳଧର୍ମ ଲୋପ କରିବାକୁ ହେବ ନାହିଁ । ଯଦି ଅନ୍ୟ କେହି ବ୍ୟକ୍ତି ଆପଣା ବଂଶର ଅନିଷ୍ଟାଚରଣରେ ପ୍ରବୃତ୍ତ ହୁଏ, ତାହାହେଲେ ବଂଶଜାତ ସୁପୁରୁଷର ଏହା କର୍ତ୍ତବ୍ୟ ଯେ ଏକମତାବଲମ୍ବୀ ହୋଇ ପରକୃତ ଅତ୍ୟାଚାର ନିବାରଣ କରିବେ । ଅତଏବ ହେ ଭୀମ! ତୁମ୍ଭେ ଅର୍ଜ୍ଜୁନ, ନକୁଳ ଓ ସହଦେବ ସହିତ ମିଳିତ ହୋଇ ଶୀଘ୍ର ସୁଯୋଧନଙ୍କୁ ଗନ୍ଧର୍ବହସ୍ତରୁ ମୋଚନ କର । ତୁମ୍ଭେ ଜାଣ, ଶତ୍ରୁ ସୁଦ୍ଧା ଯଦି ଆସି କୌଣସି ସଜ୍ଜନ ନିକଟରେ 'ମୋତେ ରକ୍ଷା କର' କହି ଶରଣାପନ୍ନ ହୁଏ, ତେବେ ସେ ତାହାକୁ ଅବଶ୍ୟ ରକ୍ଷା କରିଥାନ୍ତି । ମୁଁ ଯଜ୍ଞକର୍ମରେ ଆବଦ୍ଧ ହୋଇ ନ ଥିଲେ ତତ୍କ୍ଷଣାତ୍ ଧାବମାନ ହୋଇଥାନ୍ତି ।

ପ୍ରଥମେ ତୁମ୍ଭେମାନେ ସନ୍ଧିସ୍ଥାପନ ଦ୍ୱାରା ଦୁର୍ଯ୍ୟୋଧନଙ୍କୁ ଶତ୍ରୁହସ୍ତରୁ ମୁକ୍ତ କରିବାକୁ ଚେଷ୍ଟା କରିବ । ସେଥିରେ କୃତକାର୍ଯ୍ୟ ନ ହେଲେ ଅଳ୍ପ ପରାକ୍ରମ ପ୍ରଦର୍ଶନ କରି କାର୍ଯ୍ୟ ସାଧନ କରିବ । ତଦ୍ଦ୍ୱାରା ଯଦି ସଫଳକାମ ନ ହୁଅ ତାହାହେଲେ ଯାବତୀୟ ଉପାୟ ଉଦ୍‌ଭାବନ ଦ୍ୱାରା ଶତ୍ରୁଙ୍କୁ ଶାସନ କରି ଦୁର୍ଯ୍ୟୋଧନଙ୍କୁ ସର୍ବାନ୍ତଃକରଣେ ମୁକ୍ତ କରିବ ।”

ପାଣ୍ଡବରାଜ-ଯୁଧିଷ୍ଠିରଙ୍କ ବାକ୍ୟ ଶ୍ରବଣରେ ସେ ଚାରିଭାଇ ଜ୍ୱଳନ୍ତ ହୁତାଶନ ପ୍ରାୟ ତେଜଃଶାଳୀ ହୋଇଉଠିଲେ ଏବଂ ଦ୍ରୁତଗାମୀ ଅଶ୍ୱପୃଷ୍ଠରେ ଆରୋହଣ କରି ଅଳ୍ପକ୍ଷଣରେ ଗନ୍ଧର୍ବମାନଙ୍କୁ ଆକ୍ରମଣ କଲେ । ଯୁଦ୍ଧ ଆରମ୍ଭରେ ଅର୍ଜୁନ ସେମାନଙ୍କୁ ଲକ୍ଷ୍ୟ କରି କହିଲେ “ବଳପ୍ରକାଶ ପୂର୍ବକ ପରସ୍ତ୍ରୀ ଅପହରଣ କରିବା ଗନ୍ଧର୍ବରାଜଙ୍କର ନିତାନ୍ତ ଅନୁଚିତ । ଧର୍ମରାଜ ଯୁଧିଷ୍ଠିରଙ୍କ ଆଦେଶ ଅନୁସାରେ ତୁମ୍ଭେମାନେ ଶୀଘ୍ର ଧୃତରାଷ୍ଟ୍ରଙ୍କ ପୁତ୍ର ଏବଂ ବଧୂମାନଙ୍କୁ ପରିତ୍ୟାଗ କର । ନୋହିଲେ ମୁଁ ବିକ୍ରମ ପ୍ରକାଶ କରି ତୁମ୍ଭମାନଙ୍କ ହସ୍ତରୁ ସେମାନଙ୍କୁ ମୋଚନ କରିବି” । ଏହିପରି କହି ଧନୁର୍ଦ୍ଧର ଅର୍ଜୁନ ସେମାନଙ୍କ ଉପରେ ଶର ପ୍ରୟୋଗ କରିବାକୁ ଲାଗିଲେ । ଦେଖୁ ଦେଖୁ କେତେକ ଗନ୍ଧର୍ବ ଭୂପତିତ ହେଲେ, ଏହା ଦେଖି ଗନ୍ଧର୍ବରାଜ ଅୟସୀ ଗଦା ଘୂରାଇ ଅର୍ଜୁନଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । କ୍ରମେ ଯୁଦ୍ଧ ଭୀଷଣତର ହେବାକୁ ଲାଗିଲା । ଶେଷରେ ଅର୍ଜୁନଙ୍କର ତୀକ୍ଷ୍ଣ ଶରାଘାତରେ ନିତାନ୍ତ ପୀଡ଼ାପ୍ରାପ୍ତ ହୋଇ ଗନ୍ଧର୍ବ-ରାଜ ନିକଟକୁ ଆସି କହିଲେ “ହେ ଅର୍ଜୁନ ! ମୁଁ ତୁମ୍ଭର ପ୍ରିୟ ସଖା ଚିତ୍ର-ସେନ !” ଅର୍ଜୁନ ତହୁଁ ଯୁଦ୍ଧରୁ ନିବୃତ୍ତ ହୋଇ କୌରବମାନଙ୍କର ନିଗ୍ରହର କାରଣ ଜିଜ୍ଞାସା କରିବାରୁ ଚିତ୍ରସେନ ଉତ୍ତର ଦେଲେ “ହେ ଧନଞ୍ଜୟ ! ମୁଁ ପୂର୍ବରୁ ମନ୍ଦମତି ଦୁର୍ଯ୍ୟୋଧନର ଅଭିପ୍ରାୟ ବୁଝି ତାହାର କ୍ରିୟାକଳାପ ଦେଖୁ-ଥିଲି । ଏ ବହୁ ଦାସଦାସୀ, ହସ୍ତୀ, ଅଶ୍ୱ ଓ ଐଶ୍ୱର୍ଯ୍ୟ ନେଇ ଆପଣମାନଙ୍କୁ ଉପହାସ କରିବା ନିମିତ୍ତ ଏଠାକୁ ଆସିଥିଲା । ମୁଁ ଇନ୍ଦ୍ରଙ୍କ ଆଦେଶ ଅନୁସାରେ ଏମାନଙ୍କୁ ବନ୍ଧନ କରି ନେଇଯାଉଅଛି ।” ଅର୍ଜୁନ କହିଲେ “ହେ ଚିତ୍ରସେନ ! ଆପଣ ମୋହର ପରମ ସଖା, ଯଦି ମୋହର କିଛି ପ୍ରିୟ ଅନୁଷ୍ଠାନ

କରିବାକୁ ଇଚ୍ଛା କରନ୍ତି ତାହାହେଲେ ଏହି ଦୁର୍ଯୋଧନଙ୍କୁ ପରିତ୍ୟାଗ କରନ୍ତୁ ।" ଚିତ୍ରସେନ ପ୍ରତ୍ୟୁତ୍ତରରେ କହିଲେ "ଏପରି ଅଧର୍ମାତ୍ମା ପ୍ରବଞ୍ଚକକୁ ଛାଡ଼ିଦେବା ଉଚିତ ନୁହେ । ଧର୍ମରାଜ ଯୁଧିଷ୍ଠିର ଏହାଙ୍କର ଦୁରଭିସନ୍ଧି ଜାଣି ପାରି ନାହାନ୍ତି, ଚାଲନ୍ତୁ ତାଙ୍କ ନିକଟରେ ସମସ୍ତ ବର୍ଣ୍ଣନା କରିବ ।"

ଅନନ୍ତର କ୍ଷେମମନ୍ତ୍ରେ ଯାଇ ଯୁଧିଷ୍ଠିରଙ୍କ ନିକଟରେ ସମସ୍ତ ଘଟନା ବର୍ଣ୍ଣନା କଲେ । ଧର୍ମରାଜ ସମସ୍ତ ବୃତ୍ତାନ୍ତ ଶ୍ରବଣ କରି ସେମାନଙ୍କୁ ଶୀଘ୍ର ବନ୍ଧନ-ମୁକ୍ତ କରାଇଦେଲେ ଏବଂ ଗନ୍ଧର୍ବମାନଙ୍କୁ ପ୍ରଶଂସା କରି କହିଲେ "ତୁମ୍ଭେ-ମାନେ ଶକ୍ତିସତ୍ତ୍ୱେ ଏହି ଦୁର୍ଯୋଧନ ଏବଂ ଏହାର ସହିତ ଅମାତ୍ୟମାନଙ୍କ ପ୍ରତି ଯେ କିଛି ଅନିଷ୍ଟାଚରଣ କରି ନାହିଁ ଏହା ମୋର ସୌଭାଗ୍ୟର ବିଷୟ ।" ଦୁରାତ୍ମା ଦୁର୍ଯୋଧନ ଏପ୍ରକାର କ୍ଷମା-ବାଣୀରେ ଅତ୍ୟନ୍ତ ମର୍ମବ୍ୟଥା ଅନୁଭବ କରି ନିତାନ୍ତ ଲଜ୍ଜିତଭାବରେ ସ୍ୱନଗରକୁ ସବାନ୍ଧବରେ ପ୍ରତ୍ୟାବର୍ତ୍ତନ କଲେ ।

---

## ତୁଷାର ଖଣ୍ଡ ।



ନଦୀର ସ୍ରୋତପରି ସମୁଦ୍ର ଗର୍ଭରେ ମଧ୍ୟ ଅନେକ ସ୍ରୋତ ଅଛି । ଏମାନଙ୍କୁ ସାମୁଦ୍ରିକ ସ୍ରୋତ ବୋଲଯାଏ । ଏହି ସ୍ରୋତମାନଙ୍କ ମଧ୍ୟରୁ ପ୍ରତ୍ୟେକେ କୌଣସି ଏକସ୍ଥାନରୁ ଉତ୍ପନ୍ନ ହୋଇ ସମୁଦ୍ରର ଅନ୍ୟ ଏକ ସ୍ଥାନରେ ଭିନ୍ନ ଏକ ସ୍ରୋତସଙ୍ଗେ ମିଳିତ ହୋଇଅଛନ୍ତି ।

ଗୋଟିଏ ସାମୁଦ୍ରିକ ସ୍ରୋତ ମେକ୍ସିକୋ ଉପସାଗରରୁ ଉତ୍ପନ୍ନ ହୋଇ ଉତ୍ତରଅମେରିକାର ପୂର୍ବ ଉପକୂଳରେ ଉତ୍ତର ଦିଗକୁ ପ୍ରବାହିତ ହୋଇଅଛି । ବିଷୁବରେଖାର ନିକଟବର୍ତ୍ତୀ ସ୍ଥାନରୁ ଉତ୍ପନ୍ନ ହୋଇଥିବାରୁ ଏହି ସ୍ରୋତର ଜଳ ଉତ୍ତପ୍ତ । ତେଣୁ ଏହି ସ୍ରୋତର ସଂସ୍ପର୍ଶରେ ଏହାର ଉପରସ୍ଥ ବାୟୁ ମଧ୍ୟ ଉତ୍ତପ୍ତ ଏବଂ ଜଳୀୟ ବାଷ୍ପରେ ପରିପୂର୍ଣ୍ଣ ଥାଏ । ଏହି ସ୍ରୋତକୁ ଉପସାଗର-ସ୍ରୋତ କୁହାଯାଏ । ଏହି ସ୍ରୋତ ଆଟଲାଣ୍ଟିକ ମହାସାଗରର ଉତ୍ତର-ପୂର୍ବ ଦିଗକୁ ପ୍ରଧାବିତ ହୋଇଅଛି ।

ଆଉ ଗୋଟିଏ ସାମୁଦ୍ରିକ ସ୍ରୋତ ଉତ୍ତର ମହାସାଗରରୁ ଉତ୍ପନ୍ନ ହୋଇ ଲାବ୍ରାଡ଼ର ଏବଂ ଗ୍ରୀନଲଣ୍ଡର ମଧ୍ୟଦେଇ ଆଟଲାଣ୍ଟିକ ମହାସାଗରର ଉତ୍ତର ଭାଗରେ ପ୍ରବେଶ କରିଅଛି । ଉତ୍ତରମେରୁର ଚିରନୀହାରମୟ ସାଗରପ୍ରଦେଶରୁ ପ୍ରବାହିତ ହେଉଥିବାରୁ ଏହି ସ୍ରୋତର ଜଳ ଅତି ଶୀତଳ ଏବଂ ଏହି ସ୍ରୋତର ସଂସ୍ପର୍ଶରେ ଏହାର ଉପରସ୍ଥ ବାୟୁମଣ୍ଡଳ ମଧ୍ୟ ସେହିପରି ଶୀତଳ ; ଏହି ସ୍ରୋତକୁ ମେରୁସ୍ରୋତ କୁହାଯାଏ । ଏହି ସ୍ରୋତ ସଙ୍ଗରେ ଅଧିକାଂଶ ସମୟରେ ଖଣ୍ଡିଏ ଖଣ୍ଡିଏ ପ୍ରକାଣ୍ଡ ହିମାନୀ ବା ଘନୀଭୂତ ତୁଷାର ଭାସି ଆସେ । ତାହାକୁ ତୁଷାରଖଣ୍ଡ କୁହାଯାଏ । ଉକ୍ତ ତୁଷାରଖଣ୍ଡମାନ ଭାସି ଆସି ଯେତେବେଳେ ଅପେକ୍ଷାକୃତ ଉଷ୍ଣତର ସ୍ଥାନରେ ଉପସ୍ଥିତ ହୁଏ, ସେ ଧୀରେ ଧୀରେ ଗଳିତ ହୋଇ ସମୁଦ୍ରଜଳ ସଙ୍ଗରେ ମିଶିଯାଏ ।

ଏହି ଉପସାଗରସ୍ରୋତ ଓ ମେରୁସ୍ରୋତ ଉତ୍ତରଅମେରିକାର ପୂର୍ବବର୍ତ୍ତୀ ନିଉଫାଉଣ୍ଡଲଣ୍ଡର ଅନତିଦୂରରେ ମିଳିତ ହୋଇଅଛି । ସେହି ସ୍ରୋତଦ୍ୱୟର ମିଳନ ସ୍ଥାନରେ ଜଳୀୟ ବାଷ୍ପପରିପୂର୍ଣ୍ଣ ଉତ୍ତପ୍ତ ବାୟୁସ୍ରୋତ ମେରୁସ୍ରୋତ ସନ୍ନିହିତ ଶୀତଳ ବାୟୁପ୍ରବାହସଂସ୍ପର୍ଶରେ ଏପରି ଶୀତଳ ହୋଇଯାଏ ଯେ ଉକ୍ତ

ଜଳୀୟ ବାଷ୍ପ ଘନୀଭୂତ ହୋଇ କୁଜ୍ଝଟିକାରୂପରେ ଉକ୍ତ ସ୍ଥାନର ଚତୁର୍ଦ୍ଦିଗ ଆଚ୍ଛାଦନ କରେ । ସେପରି ସ୍ଥାନରେ ପୋତାଦିର ଗମନାଗମନ ବଡ଼ ବିପଦଜନକ । କାରଣ କୁଜ୍ଝଟିକାରେ ଚତୁର୍ଦ୍ଦିଗ ଅଦୃଶ୍ୟ ହେବାରୁ ଏକ ପୋତସଙ୍ଗେ ଅନ୍ୟ ପୋତର ସଂଘର୍ଷଣ ଘଟିବାର ଆଶଙ୍କା ଯେତେ, ଭାସମାନ ତୁଷାରଖଣ୍ଡର ଆଘାତରେ ତାହା ଭାଙ୍ଗି ବୁଡ଼ିଯିବାର ଆଶଙ୍କା ତତୋଽଧିକ ।

ଗୋଟିଏ ଗ୍ଲାସକୁ ଜଳଦ୍ୱାରା ଅର୍ଦ୍ଧପୂର୍ଣ୍ଣ କରି ଖଣ୍ଡିଏ ବରଫ ସେହି ଗ୍ଲାସ ମଧ୍ୟରେ ପକାଇଦେଲେ ଦେଖାଯିବ ଯେ ଉକ୍ତ ବରଫଖଣ୍ଡ ଜଳରେ ଭାସମାନ ହେବ । ସେହିପରି ପ୍ରକାଣ୍ଡ ପ୍ରକାଣ୍ଡ ନୀହାରଖଣ୍ଡମାନ ସମୁଦ୍ର ମଧ୍ୟରେ ଭାସୁଥାଏ କିନ୍ତୁ ସମ୍ପୂର୍ଣ୍ଣରୂପେ ଜଳରେ ଭାସେ ନାହିଁ; କେବଳ ଏକ-ଅଷ୍ଟମାଂଶ ଜଳପୃଷ୍ଠର ଉପରକୁ ବାହାରିଥାଏ ଏବଂ ଅବଶିଷ୍ଟ ଅଂଶ ଜଳପୃଷ୍ଠର ନିମ୍ନ-ଭାଗରେ ଥାଏ । ଏହି ଆଂଶିକ ଭାସମାନ ତୁଷାରଖଣ୍ଡର ନିମଜ୍ଜିତ ଅଂଶରେ ଅଘାତପ୍ରାପ୍ତ ହୋଇ ଅନେକ ଜାହାଜ ଧ୍ୱଂସପ୍ରାପ୍ତ ହୋଇଅଛି । ୧୯୧୨ ଖ୍ରୀଷ୍ଟାବ୍ଦର ଏପ୍ରିଲ ମାସରେ 'ଟିଟାନିକ୍' ନାମକ ପୃଥିବୀର ବୃହତ୍ତମ ବାଷ୍ପୀୟ ପୋତ ପ୍ରାୟ ସାର୍ଦ୍ଧ ଦୁଇସହସ୍ର ଯାତ୍ରୀ ଘେନି ବିଲାତରୁ ଆମେରିକା ଅଭିମୁଖରେ ଯାତ୍ରା କରୁଥିଲା । ବିଲାତ ଏବଂ ଆମେରିକା ମଧ୍ୟରେ ସୁବିସ୍ତୃତ ଆଟଲାଣ୍ଟିକ ମହାସାଗର ବିଦ୍ୟମାନ । ଏହି ଗଭୀର ମହାସାଗରଗର୍ଭରେ ସେ ପ୍ରଥମେ ଯାତ୍ରା କରୁଥିଲା । ଉକ୍ତ ମହାସାଗରର ଅର୍ଦ୍ଧାଧିକ ଭାଗ ଅତିକ୍ରମ କରି ଯେତେବେଳେ ଟିଟାନିକ୍ ଉପରୋକ୍ତ ଉପସାଗରସ୍ରୋତ ଏବଂ ମେରୁସ୍ରୋତର ମିଳନସ୍ଥାନ ନିକ-ଟରେ ଉପସ୍ଥିତ ହେଲା ସେତେବେଳେ ରାତ୍ରି ପ୍ରାୟ ଏକପ୍ରହର । ଉକ୍ତ ପୋତ ତୀରବେଗରେ ସମୁଦ୍ରବକ୍ଷରେ ଚାଲିଅଛି ଏପରି ସମୟରେ ଏକ ପର୍ବତାକୃତି ପ୍ରକାଣ୍ଡ ନୀହାରଖଣ୍ଡର ଅଘାତରେ ହଠାତ୍ ବିଦୀର୍ଣ୍ଣ ହୋଇ ଜଳମଗ୍ନ ହେବାକୁ ଲାଗିଲା । ୨୨୦୬ ଯାତ୍ରୀ ଏବଂ ନାବିକ ମଧ୍ୟରୁ କେବଳ ୭୦୩ ଯାତ୍ରୀ ଜୀବନ-ତରୀରେ ରକ୍ଷିପାଇ ସମୁଦ୍ରବକ୍ଷରେ ଭାସମାନ ରହି ପ୍ରାତଃକାଳରେ 'କର୍ପେଥିୟା' ନାମକ ଅପର ଏକ ଜାହାଜଦ୍ୱାରା ଉଦ୍ଧାର ଲାଭ କରିଥିଲେ । ଅବଶିଷ୍ଟ ସାର୍ଦ୍ଧ ଏକ-ସହସ୍ର ମାନବ କାଳଗ୍ରାସରେ ପତିତ ହୋଇଥିଲେ । କଥିତ ଅଛି, ଉକ୍ତ

ପୋତରେ କେବଳ ଷୋଳଗୋଟି ଜୀବନତରୀ ଥିବାରୁ ପୁରୁଷଯାତ୍ରୀମାନେ ପୋତସ୍ଥିତ ନାରୀମାନଙ୍କୁ ଜୀବନତରୀରେ ଉଠାଇଦେଲେ ଏବଂ ନିଜେ ନିଜେ ପୋତ ଉପରେ ଦଣ୍ଡାୟମାନ ରହି ଈଶସ୍ତବସହ ନିର୍ଭୀକଭାବରେ ଅସନ୍ନମୃତ୍ୟୁକୁ ଅପେକ୍ଷା କରି ରହିଲେ । ଧନ୍ୟ ବ୍ରିଟିଶ ଜାତିର ବୀରତ୍ୱ !

---

## ଭାରତେଶ୍ୱରୀ ଭିକ୍ଟୋରିୟା ।

ସୁନୀଳ ସାଗରେ ରାଜେ ଶ୍ୱେତ ଦ୍ୱୀପ,
ଅଜେୟ ଜଗତେ ନାମ ବ୍ରିଟାନିୟାଁ,
ପ୍ରାକାର ଯାହାର ନୀଳ ପାରାବାର,
ଅଖିଳ ଅବନୀମଧ୍ୟେ ମାନନୀୟା,
ଅଖିଳ ଅବନୀପତି-ପୂଜନୀୟା ।

ଅଜେୟ ଜଗତେ ବ୍ରିଟିଶ-କେଶରୀ
ବ୍ୟାପିଛି ଯା ଯଶ ସର୍ବ ମର୍ତ୍ତ୍ୟପୁରୁ,
ଜଗତନୟନ ସୁଧାଂଶୁ ତପନ-
କିରଣର ଗତି ଯାଏ ଯେତେଦୂର,
ଦୁର୍ଜ୍ଜୟ ସର୍ବଏ ଶ୍ୱେତଦ୍ୱୀପ ଶୂର ।

ନିରପେକ୍ଷ ଯେହ୍ନେ ଶମନ ସମାନ,
ରୋଷେ ବୈଶ୍ୱାନର ପ୍ରାୟେ ସର୍ବନାଶୀ,
ନ୍ୟାୟେ ବୃହସ୍ପତି, ପାଳନେ ଶ୍ରୀପତି,
ଦୟାର ଆଧାର ଶ୍ୱେତଦ୍ୱୀପବାସୀ
ଶକ୍ତି ସତ୍ତ୍ୱେ କ୍ଷମାଗୁଣ ପରକାଶି ।

ଖଟନ୍ତି ଯା ପଦେ ନୀଳ ଅମ୍ବୁପତି
ଗୌରୀପଦେ ଯେହ୍ନେ ହର କୃତ୍ତିବାସ,
ବିଜ୍ଞାନକୌଶଳେ ଉଠି ନଭସ୍ଥଳେ

ଚାନ୍ଦ ସଙ୍ଗେ ଯେହ୍ନେ କରନ୍ତି ସମ୍ଭାଷ,
ତପନ ସଙ୍ଗେ ଯେ କରନ୍ତି ବିଳାସ ;

ମେରୁମହାର୍ଣ୍ଣବ ତୁଷାର ଉରସେ,
ନଭକ୍ଷମଣ୍ଡଳ ଅଗ୍ନେୟ ଉତ୍ସଙ୍ଗେ,
ସାଗର ବକ୍ଷରେ ଭୂଧର କନ୍ଦରେ,
ସର୍ବତ୍ର ଶ୍ୱେତାଙ୍ଗେ ବିହରନ୍ତି ରଙ୍ଗେ,
ରତ ଅବିରତ ବିଜ୍ଞାନ ପ୍ରସଙ୍ଗେ ।

ସାଗର-ଫେଣଶ୍ରୀ ସଞ୍ଚାଳି ଫେଣର
ଗରଜେ ଯେକାଳେ ଉଗାରି ଅନଳ,
କମ୍ପେ ବସୁମତୀ, କମ୍ପେ ଅମ୍ବୁପତି,
ବୁଡ଼ାଇ ଦିଅଇ ସାଗର ଚହଲ,
ଅନୁକରେ ବଜ୍ରଧ୍ୱନି ଅବିକଳ ।

ସ୍ୱାଧୀନତା-ଦେବୀ ପ୍ରିୟ ନିକେତନ
ଅଟେ ଯେ ବ୍ରିଟନ, ସେ ଦ୍ୱୀପ ଈଶ୍ୱରୀ
ପୂର୍ବ ଭାଗ୍ୟ ଫଳେ ପୂର୍ବ ତପୋବଳେ
ଆର୍ଯ୍ୟଙ୍କର ଅଛି ରାଜରାଜେଶ୍ୱରୀ,
ମଣି କାଞ୍ଚନର ସଂଯୋଗ ଏପରି ।

ମାନବ-ଦାସତ୍ୱ-ଶୃଙ୍ଖଳ ମୋଚନ
କଲା ଯେଉଁ ଜାତି, ସ୍ୱାଧୀନତାଦାନ
ଯାର ନିତ୍ୟବ୍ରତ, ତାର ଅନୁଗତ
ଆଜ ଏ ଯାବନ୍ତ ଭାରତ ସନ୍ତାନ,
ଏ ଅଟେ ଭାରତ ମଙ୍ଗଳ ନିଦାନ ।

ଆଜ ଭାରତର ବଦନ ଉଜ୍ଜ୍ୱଳ,
ନବ ବିକଶିତ-ଭାରତ-କମଳ,

ଭାରତ ଅକାଶେ ସୁଖେ ପରକାଶେ
ନବ ଅରବିନ୍ଦବନ୍ଧୁ ସୁବିମଳ,
ଉପୁଜଇ ଅର୍ଘ୍ୟ ଦେନ୍ତେ ନବ ବଳ ।

ୟୁରୋପଦଳନ ଦମ୍ଭୀ ନେପୋଲିୟନ,
ଦୁର୍ଜ୍ଜୟ ଜଗତେ କାର୍ତ୍ତବୀର୍ଯ୍ୟ ପର,
ଯାର ଭୁଜବଳେ ନମ୍ର କଲେ ଟଳେ
ନିଜ ଶିର, ସେହି ବ୍ରିଟନ ଈଶ୍ୱରୀ
ଆର୍ଯ୍ୟଙ୍କର ଆଜ ରାଜରାଜେଶ୍ୱରୀ ।

ନବ ଇନ୍ଦ୍ରପ୍ରସ୍ଥେ ନବ ରାଜସୂୟେ
ଉପସ୍ଥିତ ଆଜ ରାଜନ୍ୟମଣ୍ଡଳ
ରାଜେନ୍ଦ୍ର-ଉଚିତ ଭୂଷଣେ ଭୂଷିତ,
ଯୋଗ୍ୟ ଉପହାର ଅର୍ପନ୍ତି ସକଳ,
ବନ୍ଦନ୍ତି ଈଶ୍ୱରୀ ଚରଣଯୁଗଳ ।

ମହାରାଷ୍ଟ୍ର ଶୂର ବୀରେନ୍ଦ୍ର ସିନ୍ଧିଆ,
ମହାରାଷ୍ଟ୍ର କୁଳ ଗୌରବ-ଭାସ୍କର
ପ୍ରୌଢ଼ ହୁଲକାର, କିଶୋର ଗୁଇକାର,
ଯବନ ନିଜାମ ଦାକ୍ଷିଣାତ୍ୟେଶ୍ୱର,
ଉଦୟପୁର ପତି ରବି-ବଂଶଧର ।

କାବେରୀ-ମେଖଳ ଶ୍ରୀରଙ୍ଗପତ୍ତନ,
ତୁଷାରଉଜ୍ଜ୍ୱଳ ସୁରମ୍ୟ କାଶ୍ମୀର,
ଶିଖ, ପଟିଆଲ, ଭୂଟାନ, ନେପାଳ,
ଏଥିଦ୍ ଯେତେକ ଦେଶ ରାଜବୀର
ନତ ପଦେ ଆଜ ଭାରତେଶ୍ୱରୀର ।

ନବ ଇନ୍ଦ୍ରପ୍ରସ୍ଥେ ନୂତନ କେତନ
ଉଡ଼ଇ ଅମ୍ବରେ, ବାଦଏ ନିଃସ୍ୱନ
ଶୁଭଇ ଗମ୍ଭୀର ଯେହ୍ନେ ଯଦୁବୀର
ପାଞ୍ଚଜନ୍ୟ ନାଦ କରନ୍ତି ସଘନ,
ଚକିତେ ଶୁଣନ୍ତି ନୃପ ଅଗଣନ ।

ଏ ନବ ଘୋଷଣା ପ୍ରତିଧ୍ୱନି ଛଳେ
ଗାଇବେ ଭୀଷଣ ତୁଷାରଶିଖରୀ,
ବିନ୍ଧ୍ୟଧରାଧରେ କନ୍ଦରେ କନ୍ଦରେ •
ଉଠିବ ଏ ଧ୍ୱନି ଅମ୍ବରେ ସଞ୍ଚରି,
"ଜୟ ଉତ୍କଳୀୟା ରାଜରାଜେଶ୍ୱରୀ" ।

"ଜୟ ଉତ୍କଳୀୟା ରାଜରାଜେଶ୍ୱରୀ".
ଉଲ୍ଲାସେ କଲ୍ଲୋଳେ ଗାଇବେ ସାଗର
ବେଳା ଉପକୂଳେ ନୀଳ ଊର୍ମିକୁଳେ,
ଗାଇବେ ଗମ୍ଭୀରେ ମଳୟଭୂଧର;
ଝର୍ଝର ଶବଦେ ଗାଇବେ ନିର୍ଝର ।

"ଜୟ ଉତ୍କଳୀୟା ରାଜରାଜେଶ୍ୱରୀ"
ଏ ଘୋଷଣା ଆଜ ବ୍ୟାପଇ ଉତ୍କଳ,
ଗାଏ ମହାନଦୀ, ଗାଏ ମହୋଦଧି,
ଗାବନ୍ତୁ ଉତ୍ତରେ ଘଣ୍ଟଶୀ ଅଚଳ,
ଗାବନ୍ତୁ ଦକ୍ଷିଣେ ହ୍ରଦଊର୍ମିଦଳ ।

କାଞ୍ଚନ ବିମାନେ ଗଗନେ ସଞ୍ଚରି
କର ପୁଷ୍ପବୃଷ୍ଟି ସୁର-ବିଦ୍ୟାଧରି !
ଏକାମ୍ରକାନନେ ଲତା-ଦୋଳାସନେ
ଗାଅ ବନଦେବି ! କରେ ବୀଣା ଧରି
"ଜୟ ଉତ୍କଳୀୟା-ରାଜରାଜେଶ୍ୱରୀ" ।

"ଜୟ ଉତ୍କଳୀୟା ରାଜରାଜେଶ୍ୱରୀ"
ପ୍ରତିଧ୍ୱନି ଛଳେ ଗାଉନ୍ତୁ ଦେଉଳ,
ଖଣ୍ଡଗିରି ଦରୀ ଉଦରେ ସଞ୍ଚରି
କୁଞ୍ଜେ କୁଞ୍ଜେ ରବ ଉଠୁ ସୁମଞ୍ଜୁଳ,
ମଧୁପ ଗୁଞ୍ଜିତେ ହେଉ ସେ ପୁଥୁଳ ।

ଚନ୍ଦ୍ରଭାଗା ତୀରେ ସାଗର ସୈକତେ
ଚନ୍ଦ୍ରାଲୋକେ ସୁଖେ କରି ଯେ ବିହାର,
ଜଳଦେବୀକୁଳ, ସର୍ବେ ହୋଇ ଠୁଳ
କରି ଏ ଘୋଷଣା ସଂଗୀତେ ପ୍ରଚାର,
ତାଳେ ତାଳେ ହେଉ ଲହରୀ ପ୍ରହାର ।

କର ଭାରତର ବାସନା ପୂରଣ
ପ୍ରଭୁ ନିରଞ୍ଜନ ! ଏ ଭିକ୍ଷା ଶ୍ରୀପଦେ,
ଭାରତତପନ ପ୍ରସାରି କିରଣ
ପ୍ରକାଶୁ ଏ ମୃତ ଆର୍ଯ୍ୟ-ମନଃପଦ୍ମେ,
ଏକତା ବିରାଜୁ ଏ ଭାରତ-ସଦ୍ମେ ।           (ରାଧାନାଥ)

---

## ମହାତ୍ମା ଥିଓଡ଼ାର ପାର୍କର୍ ।

ଅତି ହୀନହୀନ ଅବସ୍ଥାରୁ ଲୋକ ଅଧ୍ୟବସାୟ ବଳରେ କିପରି ମହତ୍ ଏବଂ ଉଚ୍ଚପଦର ଅଧିକାରୀ ହୁଏ, ମହାତ୍ମା ଥିଓଡ଼ାର ପାର୍କାର ତାହାର ଗୋଟିଏ ଉଦାହରଣସ୍ଥଳ । ୧୮୧୦ ଖ୍ରୀଷ୍ଟାବ୍ଦରେ ଆମେରିକାର ଯୁକ୍ତରାଜ୍ୟ ଅନ୍ତର୍ଗତ ବୋଷ୍ଟନ ନଗରର ସନ୍ନିହିତ ଲେକ୍ସିଙ୍ଗ୍ଟନ ନାମକ ଗୋଟିଏ ପଲ୍ଲୀଗ୍ରାମରେ ସେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କର ପିତା ଜନ୍ ପାର୍କାର ଜଣେ ସାମାନ୍ୟ କୃଷକ ଥିଲେ । ଥିଓଡ଼ାର ପାର୍କାର ଶୈଶବରେ ଗ୍ରାମ୍ୟପାଠଶାଳାରେ ପ୍ରାଥମିକ ଶିକ୍ଷା

ଲାଭ କରୁଥିଲେ । ସେ ସମୟରେ ଉକ୍ତ ରାଜ୍ୟର କୃଷକପଲ୍ଲିମାନଙ୍କରେ କେବଳ ଶୀତକାଳରେ କୃଷିକାର୍ଯ୍ୟ ସ୍ଥଗିତ ଥାଏ ବୋଲି ତିନିମାସ ପାଠଶାଳା ବସୁଥିଲା । ଏହି ସମୟରେ ଶିକ୍ଷକ ଗ୍ରାମକୁ ଆସି ଅଧ୍ୟାପନା ଆରମ୍ଭ କରୁଥାନ୍ତି । ଅବଶିଷ୍ଟ ନଅମାସ ଆବାଳବୃଦ୍ଧ କୃଷିକର୍ମରେ ବ୍ୟାପୃତ ଥାନ୍ତି । ପାର୍କାରଙ୍କୁ ମଧ୍ୟ ପିତାଙ୍କ ସହିତ ବାଲ୍ୟକାଳରେ ପ୍ରତ୍ୟହ କୃଷିକ୍ଷେତ୍ରକୁ ଯିବାକୁ ହେଉଥିଲା । କିନ୍ତୁ ସେ ଅନ୍ୟାନ୍ୟ ଛାତ୍ରମାନଙ୍କ ପରି ତିନିମାସ ପଢ଼ି ଅବଶିଷ୍ଟ ମାସ ନିଶ୍ଚେଷ୍ଟ ରହୁ ନ ଥିଲେ । ଅବସର ସମୟରେ ବିଶେଷତଃ ଗ୍ରୀଷ୍ମକାଳରେ ସେ ଖଣ୍ଡେ ଖଣ୍ଡେ ପୁସ୍ତକ ପଢ଼ିବା ଅଭ୍ୟାସ କରିଥିଲେ । ବାଲ୍ୟକାଳରୁ ତାଙ୍କର ପୁସ୍ତକ-ପାଠରେ ଜ୍ଞାନସ୍ପୃହା ବଳବତୀ ହୋଇଥିଲେହେଁ ତାହାଙ୍କୁ କେତେଖଣ୍ଡ ପୁସ୍ତକ କ୍ରୟ କରି ଦେବାର କ୍ଷମତା ପିତାଙ୍କର ନ ଥିଲା । ଏକଦା ସେ ଜଣେ ବନ୍ଧୁଙ୍କ ମୁଖରୁ ଖଣ୍ଡିଏ ପୁସ୍ତକର ଅତ୍ୟନ୍ତ ପ୍ରଶଂସା ଶୁଣି ସେଖଣ୍ଡ ପଢ଼ିବା ପାଇଁ ବ୍ୟାକୁଳ ହୋଇପଡ଼ିଲେ, ମାତ୍ର ପିତାଙ୍କ ଦୁରବସ୍ଥା ଦେଖି କଣ କରିବେ କିଛି ସ୍ଥିର କରି ନ ପାରି ଚିନ୍ତିତ ହେଲେ । କିନ୍ତୁ ଇଚ୍ଛା ଥିଲେ ଉପାୟ ଆପେ ଆସେ—ପାର୍କାର ଭାବି ଭାବି ଏକ କୌଶଳ ସ୍ଥିର କଲେ । କୃଷିକ୍ଷେତ୍ରସନ୍ନିହିତ ବନ ମଧ୍ୟରେ ସେ ବାଳକପ୍ରିୟ ଏକଜାତୀୟ ଫଳ ଦେଖିଥିଲେ । ସେହି କୋଳିକୁ ନେଇ ବିକ୍ରୟ କଲେ ତଲ୍ଲବ୍ଧ ଅର୍ଥରେ ପୁସ୍ତକକ୍ରୟ ହୋଇ ପାରିବ ଏହା ନିଶ୍ଚୟ କରି କୃଷିକାର୍ଯ୍ୟରେ ବ୍ୟାଘାତ ହେବା ଭୟରେ ଅତି ପ୍ରତ୍ୟୁଷରେ ସେ ଫଳମାନ ସଂଗ୍ରହ କରି କୃଷିକର୍ମାନ୍ତେ ବିପଣିରେ ସେଗୁଡ଼ିକ ବିକ୍ରୟ କରି ଯେଉଁ ଧନ ପାଇଲେ ସେଥିରେ ପ୍ରୟୋଜନୀୟ ପୁସ୍ତକମାନ କିଣି ପଢ଼ିବାକୁ ଲାଗିଲେ । କିନ୍ତୁ ଏହିରୂପେ କେବଳ ଘରେ ପଢ଼ି ପଢ଼ି ତାହାଙ୍କର ସନ୍ତୋଷ ଜନ୍ମିଲା ନାହିଁ । ସେ ବିଶ୍ୱବିଦ୍ୟାଳୟର ପରୀକ୍ଷା କଥା ଲୋକମୁଖରୁ ଶୁଣିଥିଲେ । ସେହି ପରୀକ୍ଷା କିପରି ଦେବେ ଏଥିପାଇଁ ତାହାଙ୍କର ପ୍ରାଣ ବ୍ୟାକୁଳ ହେଲା । ପିତା ଏ କ୍ଷେତ୍ରରେ ତାହାଙ୍କୁ କିଛି ସାହାଯ୍ୟ କରି ପାରିବେ ନାହିଁ ଜାଣି ସେ ଆପଣାର ଉନ୍ନତି ନିମନ୍ତେ—'ନିଜ ଶିଙ୍ଗରେ ମାଟି ଖୋଳିବାକୁ' ପ୍ରତିଜ୍ଞାବଦ୍ଧ ହେଲେ । ତାଙ୍କର ସେ ସାଧୁ ସଂକଳ୍ପ ନିର୍ବନ୍ଧରେ ସଫଳ ହୋଇଥିଲା । ଏକଦା ପ୍ରଭାତରେ ସେ ପିତାଙ୍କଠାରୁ କୃଷିକ୍ଷେତ୍ରରୁ ବିଦାୟ ନେଇ ବୋଷ୍ଟନ ନଗର ଅଭିମୁଖରେ

ଯାବମାନ ହୋଇ ତତ୍ପରେ ହିତ ହାର୍ଭର୍ଡ ମହାବିଦ୍ୟାଳୟର ପ୍ରବେଶଦ୍ୱାରରେ ଯାଇ ଉପସ୍ଥିତ ହେଲେ । ସେହି ଦିବସରେ ପ୍ରବେଶିକା ପରୀକ୍ଷା ଗୃହୀତ ହେଉଥିବାରୁ ପାର୍କାର ଉକ୍ତ ପରୀକ୍ଷା ଦେଇ ଅପରାହ୍ଣରେ ପରୀକ୍ଷୋତ୍ତୀର୍ଣ୍ଣ ହୋଇଥିବାର ଶୁଭ-ସଂବାଦ ଘେନି ଗୃହକୁ ପ୍ରତ୍ୟାଗମନ କରିଥିଲେ ଏବଂ ରାତ୍ରିକାଳରେ ଗୃହରେ ଉପସ୍ଥିତ ହୋଇ ପିତାଙ୍କୁ ସେହି ଶୁଭସଂବାଦ ଜ୍ଞାପନରେ ବିସ୍ମୟାନ୍ୱିତ କରି-ଥିଲେ । ବାଳକପୁଣି କପର ବା ଏତେ ପୁସ୍ତକ କ୍ରୟ କଲା ଏବଂ ଶିକ୍ଷକର ବିନା ସାହାଯ୍ୟରେ କପର ବା ଏତେ ଅଧ୍ୟୟନ କଲା ଏହା ଭାବି ପିତା ଅବାକ୍ ହୋଇଗଲେ ।

ଅଳ୍ପକାଳ ପରେ ପାର୍କାର ପ୍ରୋକ୍ତ ହାର୍ଭର୍ଡ ନିକଟସ୍ଥ ଗୋଟିଏ ଗ୍ରାମରେ ଶିକ୍ଷକପଦରେ ନିଯୁକ୍ତ ହେଲେ । ଏହି କାର୍ଯ୍ୟରେ କିଛି ଧନାଗମ ହେବାରୁ ସେ ଦରିଦ୍ର ପିତାଙ୍କୁ କିଛି ଅର୍ଥ-ସାହାଯ୍ୟ କଲେ ଏବଂ କୃଷିକାର୍ଯ୍ୟରେ ପିତାଙ୍କୁ ସାହାଯ୍ୟ କରିବା ପାଇଁ ନିଜ ସ୍ଥାନରେ ଅଳ୍ପ ବେତନରେ ଗୋଟିଏ ଭୃତ୍ୟ ରଖାଇଦେଲେ । ଶିକ୍ଷକଥିବା ସମୟରେ ପାର୍କାର ସମସ୍ତଦିନ ଅଧ୍ୟାପନା-କାର୍ଯ୍ୟରେ କଟାଉଥିଲେ ଏବଂ ରାତ୍ରିକାଳ ନିଦ୍ରାଳସ୍ୟପରିହାରପୂର୍ବକ କେବଳ ପୁସ୍ତକ ଅଧ୍ୟୟନରେ ଯାପନ କରୁଥିଲେ । ଏପରି କି, ଦିନେ ଦିନେ ପ୍ରଭାତ ହେଲା ବେଳକୁ ସେ ପାଠମଗ୍ନ ଥାନ୍ତି । ଉକ୍ତ କାର୍ଯ୍ୟରେ ଥାଇ ପ୍ରାୟ ତିନି-ବର୍ଷକାଳ କଠିନ ପରିଶ୍ରମରେ ସେ ଗ୍ରୀକ୍, ଲାଟିନ୍, ଜର୍ମାନୀ, ଫରାସୀ ଓ ଇଟାଲୀୟ ଭାଷା ଶିକ୍ଷା କରିପାରିଥିଲେ । ଯେତେ ଅଧ୍ୟୟନ କଲେ ସୁଦ୍ଧା ତାହାଙ୍କର ଜ୍ଞାନପିପାସା ନିବୃତ୍ତ ହେଲା ନାହିଁ । ଏହିପରି ଅଧ୍ୟବସାୟ ବଳରେ ସେ ଶେଷରେ ବିଶ୍ୱବିଦ୍ୟାଳୟର ସମସ୍ତ ପାଠ୍ୟ ବିଷୟ ସମାପ୍ତ କରିଥିଲେ ଏବଂ ପରୀକ୍ଷାରେ ଉଚ୍ଚସ୍ଥାନ ଅଧିକାର କରିପାରିଥିଲେ ।

ବର୍ତ୍ତମାନ ଉଚ୍ଚଶିକ୍ଷା ଲାଭକରି କଣ କରିବେ, ପାର୍କାରଙ୍କ ହୃଦୟରେ ଏହି ପ୍ରଶ୍ନ ସର୍ବଦା ଉଥିତ ହେଲା, କିନ୍ତୁ ଶୈଶବରୁ ତାହାଙ୍କ ହୃଦୟରେ ଧର୍ମ-ବୁଦ୍ଧି ଜାଗରୂକ ଥିଲା । ଗୋଟିଏ ବିଶେଷ ଘଟନାରେ ତାହା ଦୃଢ଼ୀଭୂତ ହୋଇ-ଥିଲା । ଏକଦା ବାଳକ ପାର୍କାର କୃଷିକ୍ଷେତ୍ରରୁ ବାହୁଡିବାବେଳେ ଗୋଟିଏ

ପୁଷ୍କରଣୀରେ ପ୍ରସ୍ଫୁଟିତ ପଦ୍ମଟିଏ ଦେଖି ତୋଳିଅଣିବାକୁ ଅଗ୍ରହ କଲେ । ଫୁଲ ପାଖକୁ ଯାଇ ଦେଖିଲେ ଯେ ସେହି ପଦ୍ମପତ୍ରରେ ଗୋଟିଏ କଚ୍ଛପ ଶୋଇଛି । ତାହା ଉପରେ ସେ ଲୋଷ୍ଟ୍ର ନିକ୍ଷେପ କରିବାକୁ ଯାଉଅଛନ୍ତି ଏହି ସମୟରେ ତାହାଙ୍କୁ କେହି ଯେମନ୍ତେ କହିଲା "ଏ କଣ କରିବାକୁ ଯାଉଛ? ନିର୍ଦ୍ଦୋଷ ପ୍ରାଣୀକୁ ମାରିବାକୁ ବସିଛ?" ଏତକରେ ପାର୍କାର ସେ ଦୁଷ୍କର୍ମରୁ ତତ୍କ୍ଷଣାତ ନିବୃତ୍ତ ହୋଇ ଗୃହକୁ ଅସି ଜନନୀଙ୍କୁ ସେ କଥା କହିଲେ ଏବଂ ସେ ଉପଦେଶଦାତାର ପରିଚୟ ଜିଜ୍ଞାସା କଲେ । ଉତ୍ତରରେ ଜନନୀ କହିଲେ "ବତ୍ସ, ସେ ଈଶ୍ୱର ବାଣୀ! ତାହାକୁ ଲୋକେ ଧର୍ମବୁଦ୍ଧି ବୋଲି କହିଥାନ୍ତି । ତୁ ଏଣିକି ଏହି ବାଣୀକି ମାନି କାର୍ଯ୍ୟ କଲେ ସୁଖୀ ହେବୁ ।" ଏବେ ସେହି ଧର୍ମବୁଦ୍ଧି ପାର୍କାରଙ୍କ ହୃଦୟରେ ପୁଷ୍ଟ ଆକାର ଧାରଣ କରିଅଛି । ସେ ଭାବ ସ୍ଥିର କଲେ ଯଦ୍ଦ୍ୱାରା ପୃଥିବୀରେ ଲୋକଙ୍କର କିଛି ଉପକାର କରିହେବ ଏପରି କାର୍ଯ୍ୟ କରିବ । ତହୁଁ ସେ ଧର୍ମାଚାର୍ଯ୍ୟପଦ ଗ୍ରହଣ କରି ସ୍ଥାନେ ସ୍ଥାନେ ବୁଲି ଜନସାଧାରଣଙ୍କୁ ଧର୍ମୋପଦେଶ ପ୍ରଦାନ କରିବାକୁ ଲାଗିଲେ । ସୌଭାଗ୍ୟକ୍ରମେ ଏକ ଧର୍ମଶୀଳା ରମଣୀଙ୍କୁ ପତ୍ନୀପଦରେ ପାଇଥିବାରୁ ତାଙ୍କର ଏ କାର୍ଯ୍ୟରେ ପୋଷକତା ହେଲା । ସେ ଖ୍ରୀଷ୍ଟିୟାନ ଥିଲେହେଁ ତାଙ୍କର ଧର୍ମମତ ସ୍ୱତନ୍ତ୍ର ଏବଂ ସାର୍ବଜନୀନ ଥିଲା । ସେ ଜନମଣ୍ଡଳୀ ମଧ୍ୟରେ ସ୍ପଷ୍ଟ କହୁଥିଲେ ଯେ ବାଇବଲରେ ମଧ୍ୟ ଅନେକ ଭ୍ରମ ଏବଂ ଅସଙ୍ଗତ କଥା ଅଛି । ଏହା ଅମୂଳାନ୍ତ ଅଭ୍ରାନ୍ତ ନୁହେ । ପାର୍କାରଙ୍କ ମୁଖରୁ ଏପ୍ରକାର କଥା ଦେଶରେ ନୂତନ ଶୁଣାଯିବାରୁ ଲୋକେ ତାହାଙ୍କୁ ନାସ୍ତିକ ବୋଲି ଚତୁର୍ଦ୍ଦିଗରେ ଘୋଷଣା କରିଥିଲେ । ତାଙ୍କର ବନ୍ଧୁମାନେ ଧୀରେ ଧୀରେ ତାହାଙ୍କ ସଙ୍ଗ ପରିତ୍ୟାଗ କରିବାକୁ ଲାଗିଲେ । କିନ୍ତୁ ପାର୍କାର ଏହା ଦୃଢ଼ ବୁଝିଥିଲେ, ଯାହା ସତ୍ୟ ତାହା ପ୍ରାଣପଣେ ପ୍ରଚାର କରିବାକୁ ହେବ । କେବଳ କୋମଳମନା ଥିବାରୁ ଦେଶବାସୀଙ୍କ ଏପ୍ରକାର ଅସଦୃଶ ବ୍ୟବହାରରେ ଅନ୍ତରରେ କ୍ଲେଶ ଅନୁଭବ କରୁଥିଲେ, କିନ୍ତୁ କାହାରିକି କିଛି ପ୍ରତ୍ୟୁତ୍ତର ନ ଦେଇ ନୀରବ ରହୁଥିଲେ । ମନକୁ ନିର୍ମଳ ଏବଂ ସରସ ରଖିବାର ତାଙ୍କର ଏକମାତ୍ର ଉପାୟ ଥିଲା ଶିଶୁସଙ୍ଗ । ସେ ସ୍ୱଭାବତଃ ଶିଶୁପ୍ରିୟ ଥିବାରୁ ସେମାନଙ୍କୁ କ୍ରୀଡ଼ନକ ଏବଂ ସତତ

ପ୍ରସ୍ତାବ ପ୍ରଦାନ ଦ୍ୱାରା ଆପଣାର ବଶୀଭୂତ କରିପାରୁଥିଲେ । ସେତେବେଳେ ବୋଷ୍ଟନ ନଗରର ସମସ୍ତ ଧର୍ମମନ୍ଦିରରେ ତାହାଙ୍କର ପ୍ରବେଶ ନିଷେଧ ଥିଲା । ସେଥିରେ ପାର୍କାର ନିରୁତ୍ସାହ ନ ହୋଇ ସେହି ନଗରରେ ଗୋଟିଏ ସ୍ୱତନ୍ତ୍ର ଗୃହ ଭଡାନେଇ ବକ୍ତୃତା ଦେବାକୁ ଆରମ୍ଭ କଲେ । କ୍ରମେ ଶତ ଶତ ସ୍ତ୍ରୀ ପୁରୁଷ ତାହାଙ୍କର ଉପଦେଶ ଶ୍ରବଣ କରିବାକୁ ଆସିଲେ ଏବଂ ଧୀରେ ଧୀରେ ତାହାଙ୍କ ଧର୍ମମତ ସହସ୍ର ସହସ୍ର ଲୋକଙ୍କ ହୃଦୟରେ ସ୍ଥାନ ଲାଭ କଲା । ଏଣିକି ତାହାଙ୍କ ପ୍ରତି ନିଷେଧ କରିବା ଲୋକେ ଥାଉ, ଆମେରିକାର ନାନାସ୍ଥାନରୁ ଧର୍ମୋପଦେଶ ଦେବାଲାଗି ତାହାଙ୍କଠାକୁ ନିମନ୍ତ୍ରଣ ଆସିଲା । ଏହିରୂପେ ତାଙ୍କର ଧର୍ମମତ ଆମେରିକାରୁ ସୁଦୂର ଭାରତବର୍ଷ ପର୍ଯ୍ୟନ୍ତ ପ୍ରଚାରିତ ହୋଇଗଲା । ପାର୍କାରଙ୍କ ଜୀବନର ମୁଖ୍ୟ ଉଦ୍ଦେଶ୍ୟ ବହୁପରିମାଣରେ ସଫଳ ହୋଇଥିଲା ।

ଦାସତ୍ୱଶୃଙ୍ଖଳମୋଚନ ତାହାଙ୍କ ଜୀବନରେ ଅନ୍ୟତର ପ୍ରଧାନ କାର୍ଯ୍ୟ । ସେତେବେଳେ ଆଫ୍ରିକାର ଶତ ଶତ କ୍ରୀତଦାସ ଆମେରିକାରେ ପଶୁବତ୍ ବିକ୍ରୀତ ହେଉଥିଲେ । ଦାସମାନଙ୍କ ପ୍ରତି ନିଷ୍ଠୁର ବ୍ୟବହାର ଶୁଣିଲେ ହୃଦୟରେ ଅତ୍ୟନ୍ତ କ୍ଳେଶ ଜନ୍ମେ । ମାତାର କ୍ରୋଡ଼ରୁ କେତେବେଳେ ଶିଶୁକୁ, ପିତାର ନିକଟରୁ ପୁତ୍ରକୁ, କେବେ ବା ପତି ପାର୍ଶ୍ୱରୁ ତାହାର ପ୍ରିୟତମା ପତ୍ନୀକୁ ନିର୍ଦ୍ଦୟଭାବରେ ଛଡାଇ ନେଇଯିବାକୁ ହେଉଥିଲା । ଏହିସବୁ କ୍ରୂର ବ୍ୟବହାର ଶୁଣି ପାର୍କାର ଅତ୍ୟନ୍ତ ମର୍ମବ୍ୟଥା ଅନୁଭବ କରି ସେଥିର ପ୍ରତିକାର ଚିନ୍ତା କରିବାକୁ ଲାଗିଲେ ଏବଂ ଏହି ନିଷ୍ଠୁର ପ୍ରଥାର ଦୂରୀକରଣମାନସରେ ଗୋଟିଏ ସମ୍ବାଦ ପତ୍ର ପ୍ରକାଶ କରିଥିଲେ । ୧୮୪୭ ଖ୍ରୀଷ୍ଟାବ୍ଦର ଗୋଟିଏ କଣିଷ୍ଠ ଘଟନାରେ ପାର୍କାର ଏହାର ଉନ୍ମୂଳନରେ ଦୃଢ଼ପ୍ରତିଜ୍ଞ ଓ ବଦ୍ଧପରିକର ହୋଇଥିଲେ ।

ଏକଦା ସେ ସମୁଦ୍ରକୂଳରେ ଭ୍ରମଣ କରୁ କରୁ ଦେଖିଲେ ବୋଷ୍ଟନଠାରେ ଆଫ୍ରିକାର ଜାହାଜ ଆସି ଲାଗିଲା । ଯାତ୍ରୀମାନେ ସେଥିରୁ ଅବତରଣ କରିବା ପରେ ଗୋଟିଏ ଅନାହାରକ୍ଲିଷ୍ଟ ପରିମ୍ଳାନମୁଖ ବ୍ୟକ୍ତି ଜାହାଜର ଗୋଟିଏ

ଉମସାହଙ୍କ ପବୋଷ୍ଟକୁ ସଶଙ୍କଚିତ୍ତରେ ତାହାର ବୋଷ୍ଟନ ଅଭିମୁଖରେ ଯାତ୍ରା କଲା । ସନ୍ଧାନରୁ ପରେ ଜଣାଗଲା ସେ ଜଣେ କ୍ରୀତଦାସ, ପ୍ରଭୁଙ୍କ ନିଷ୍ଠୁର ବ୍ୟବହାର ସହି ନ ପାରି ବୋଷ୍ଟନ ନଗରରେ ରକ୍ଷା ପାଇବା ଆଶାରେ ପ୍ରଭୁଙ୍କ ଅଜ୍ଞାତରେ ପଳାଇଆସିଛି, କିନ୍ତୁ ସେ ହତଭାଗ୍ୟ ବୋଷ୍ଟନରେ ସୁଦ୍ଧା ଆଶ୍ରୟ ପାଇଲା ନାହିଁ । ତାହାକୁ ପୁନର୍ବାର ସେହି ଜାହାଜରେ ପ୍ରଭୁ ନିକଟକୁ ପଠାଇଦିଆଗଲା । ମହାମତି ପାର୍କାର ଏହି ଦାରୁଣ ଦୃଶ୍ୟ ସନ୍ଦର୍ଶନରେ ଅତ୍ୟନ୍ତ ମର୍ମାହତ ହୋଇ ଉଦ୍ରପ୍ରକୃତିକାର ମାନସରେ ସେହି ଦିନଠାରୁ ଗୋଟିଏ ସମିତି ଗଠନ କଲେ । ପଳାୟିତ ଦାସମାନଙ୍କୁ ଦେଖିବାମାତ୍ରେ ଆଶ୍ରୟ ପ୍ରଦାନ କରିବା ସେହି ସମିତିର ପ୍ରଧାନ କାର୍ଯ୍ୟ ହେଲା । ସ୍ୱୟଂ ପାର୍କାର' ମଧ୍ୟ ଅନେକ ଦାସଙ୍କୁ ସ୍ୱଗୃହରେ ଆଶ୍ରୟ ପ୍ରଦାନ କରିଥିଲେ । ପଶ୍ଚାତ୍ ଦାସବ୍ୟବସାୟୀମାନଙ୍କ ପ୍ରଭାବରେ ଗବର୍ଣ୍ଣମେଣ୍ଟ ଏପରି ଆଜ୍ଞା ପ୍ରଚାର କଲେ ଯେ ରାଜ୍ୟମଧ୍ୟରେ କେହି ଦାସମାନଙ୍କୁ ସ୍ୱଗୃହରେ ଆଶ୍ରୟ ପ୍ରଦାନ କରି ପାରିବେ ନାହିଁ । ପାର୍କାର ଏପ୍ରକାର ଅନ୍ୟାୟ ଘୋଷଣା ଶ୍ରବଣ କରି ଦିନେ ଉପଦେଶ ପ୍ରଦାନ କାଳରେ ଶ୍ରୋତୃମଣ୍ଡଳୀ ସମ୍ମୁଖରେ ଓଜସ୍ୱିନୀ ଭାଷାରେ ଏହିପରି କହିଥିଲେ "ମୁଁ ଏପ୍ରକାର ପାପସମ୍ଭୂତ ବିଧିକୁ ପାଦରେ ଦଳନ କରୁଅଛି ଏବଂ ସୁଯୋଗ ପାଇଲେ ମୁଁ ଏହି ବିଧି ଖଣ୍ଡନ କରିବି" ।

ସେହି ଦିନଠାରୁ ପାର୍କାର ଦାସତ୍ୱପ୍ରଥାର ଉଚ୍ଛେଦମାନସରେ ସ୍ଥାନେ ସ୍ଥାନେ ଭ୍ରମଣ କରି ବକ୍ତୃତା ପ୍ରଦାନ କଲେ ଏବଂ ଅନେକ ଲୋକଙ୍କୁ ଏହି ଉଦାରମତର ଅନୁକୂଳ ଦେଖି ବୀରଦର୍ପରେ କାର୍ଯ୍ୟ ସାଧନ କରିବାକୁ ଲାଗିଲେ । ସୌଭାଗ୍ୟକ୍ରମେ କେତେ ଜଣ ବନ୍ଧୁ ତାହାଙ୍କୁ ଏ ବିଷୟରେ ପ୍ରଚୁର ସାହାଯ୍ୟ ପ୍ରଦାନ କରିଥିଲେ । ଏତଦ୍ୱାରା ଦାସବ୍ୟବସାୟର ସପକ୍ଷ ଦଳ ତାହାଙ୍କର ମହାଶତ୍ରୁ ହୋଇ ରାଜଦ୍ୱାରରେ ଅଭିଯୋଗ କଲେ, କିନ୍ତୁ ସତ୍ୟପ୍ରିୟ ପାର୍କାର ସେଥିପ୍ରତି ଭ୍ରୂକ୍ଷେପ ନ କରି ସର୍ବଦା ଏହି ବୀରବାଣୀ ପ୍ରକାଶ କରୁଥିଲେ—"ଯେଉଁମାନେ ପାପକୁ ପ୍ରଶ୍ରୟ ଦିଅନ୍ତି ସେମାନେ ନିତାନ୍ତ କାପୁରୁଷ, ସେମାନଙ୍କୁ ମୁଁ ଭୟ କରିବି ?" ଲୋକଙ୍କର ବ୍ୟବସାୟରେ କୁଠାରାଘାତ ଦେଖି

ସ୍ଥାନେ ସ୍ଥାନେ ଦାସବ୍ୟବସାୟୀମାନଙ୍କର ସଭା ସମିତି ବସିଲା । ଦିନକରେ ସେମାନଙ୍କର ଏକ ମହାସଭାରେ ପାର୍କାର ଦାସତ୍ୱ ସପକ୍ଷରେ ସେମାନଙ୍କର ଅଭିମତ ଏବଂ ଯୁକ୍ତି ଜାଣିବା ସକାଶେ ଛଦ୍ମ ବେଶରେ ସଭାସ୍ଥଳକୁ ଯାଇ ସମସ୍ତ କଥା ଶ୍ରବଣ କରୁଥିଲେ । ଜଣେ ଦାସବ୍ୟବସାୟୀ ସେଠାରେ ବକ୍ତୃତା କରିବା ସମୟରେ ଆପଣାର ଯୁକ୍ତିକୁ ବଳବତ୍ତର ଏବଂ ଅଖଣ୍ଡନୀୟ ବୋଲି ମନେ ମନେ ଭାବି ହଠାତ୍ ସଦର୍ପରେ କହିଲେ "ଏଥିକି ପାର୍କାର କି ଯୁକ୍ତି ଦେଖାଇବେ ?" ଏତିକି ଶୁଣିବାମାତ୍ରକେ ଜଣେ ବ୍ୟକ୍ତି ସଭାମଣ୍ଡଳରୁ ଗାତ୍ରୋତ୍ଥାନ କରି ସଦମ୍ଭରେ କହିଲେ "ଏହା ପ୍ରତିକୂଳରେ ପାର୍କାର କଣ କହିବେ ତାହା କଣ ତୁମ୍ଭେ ସତେ ଶୁଣିବାକୁ ଇଚ୍ଛା କରୁଛ ? ତାହାହେଲେ ତାହାଙ୍କର ମତ ଏହିକ୍ଷଣି ଶ୍ରବଣ କର ।" ଏହି ଓଜସ୍ୱିନୀ ବାଣୀ ଶୁଣିବା ମାତ୍ରକେ ଶତ ଶତ ଲୋକଙ୍କ ଚକ୍ଷୁ ତାହାଙ୍କ ଆଡ଼କୁ ଆକୃଷ୍ଟ ହେଲା ଏବଂ ତତ୍କ୍ଷଣାତ୍ ସମସ୍ତେ ତାହାଙ୍କୁ ପରିବେଷ୍ଟନ କରି 'ଧର ଧର ମାର ମାର' ବୋଲି ଚିତ୍କାର କରିବାକୁ ଲାଗିଲେ ; କିନ୍ତୁ ନିର୍ଭୀକ ପାର୍କାର ନିଜ ସ୍ଫୀତବକ୍ଷ ଦେଖାଇ କହିଲେ, "କିଏ ମୋହ ଅଙ୍ଗରେ ହସ୍ତସ୍ପର୍ଶ କରିବାକୁ ସାହସୀ, ଆସୁ ? ମୁଁ ଏହିଠାରେ ଦଣ୍ଡାୟମାନ ଅଛି ।" ଏଥିରେ କରସ୍ପର୍ଶ କରିବା ତେଣିକି ଥାଉ, କାହାରି ବାକ୍ୟୋଚ୍ଚାରଣ କରିବାର ସାହସ ରହିଲା ନାହିଁ । ତହୁଁ ବୀରପୁରୁଷ ପାର୍କାର ସେମାନଙ୍କ ମତ ପ୍ରତିକୂଳରେ ଓଜସ୍ୱିନୀ ଭାଷାରେ ବାଗ୍‌ବାଣ ବର୍ଷଣ କରିବାକୁ ଲାଗିଲେ । ସଭାସ୍ଥ ସମସ୍ତ ଲୋକ ନିସ୍ତବ୍ଧ ନିସ୍ପନ୍ଦ ହୋଇ ସେହି ଅଗ୍ନିବର୍ଷା ସହିବାକୁ ଲାଗିଲେ । ତାହାଙ୍କର ବାକ୍ୟ ସମାପ୍ତି ଉତ୍ତାରେ କେହି ଉଠିବା ତେଣିକି ଥାଉ, ସେ ସଭାସ୍ଥଳ ପରିତ୍ୟାଗ କରି ଯିବା ପରେ ମଧ୍ୟ ସଭା ସେହିପରି ନିସ୍ତବ୍ଧ ଭାବ ଧାରଣ କରିଥିଲା ।

ପରୋପକାର ଲାଗି ଏହିପ୍ରକାରେ ନିରନ୍ତର ପରିଶ୍ରମ କରି ତାହାଙ୍କର ସ୍ୱାସ୍ଥ୍ୟଭଙ୍ଗ ହେଲା । ଯେତେବେଳେ କାର୍ଯ୍ୟରେ ଅସମର୍ଥ ହୋଇପଡିଲେ, ସେତେବେଳେ ବନ୍ଧୁମାନେ ତାହାଙ୍କୁ ସ୍ଥାନପରିବର୍ତ୍ତନ ଏବଂ ଭ୍ରମଣ କରିବା ଉଦ୍ଦେଶ୍ୟରେ ସସ୍ତ୍ରୀକ ୟୁରୋପକୁ ପଠାଇଦେଲେ । ପାର୍କାର ୧୮୫୯ ଖ୍ରୀଷ୍ଟାବ୍ଦରେ

ସ୍କୁବେପଗଣ୍ଡିକୁ ଅସି, ଫ୍ରାନ୍ସ, ଜର୍ମ୍ମାନୀ ଓ ସୁଇଜରଲାଣ୍ଡରେ ଭ୍ରମଣ କରି ଶେଷରେ ଇଟାଲିଦେଶରେ ଉପସ୍ଥିତ ହେଲେ । ଏହିଠାରେ ତାଙ୍କର ଭ୍ରମଣ ସମାପ୍ତ ଏବଂ ଜୀବନଲୀଳାର ଯବନିକାପତନ ହେଲା । ମୃତ୍ୟୁର କେତୁଦିନ ପୂର୍ବରେ ଯେତେବେଳେ ସେ ନିତାନ୍ତ ଅକ୍ଷମ ହୋଇପଡିଲେ ସେତେବେଳେ ଜଣେ ବନ୍ଧୁଙ୍କୁ କହିଥିଲେ "ଭଗବାନ୍ ମୋତେ ଯେତେ ଶକ୍ତି ଦେଇଥିଲେ ସେଥିର ଅର୍ଦ୍ଧେକ କାର୍ଯ୍ୟରେ ଲଗି ପାରିଲି ନାହିଁ ।" ତାହାଙ୍କ ସ୍ୱର୍ଗାରୋହଣସମୟର ଘଟନା ବଡ଼ କୌତୂହଳଜନକ । ମୃତ୍ୟୁର କେତୁକ୍ଷଣ ପୂର୍ବରୁ ସେ ପତ୍ନୀଙ୍କୁ ସମ୍ବୋଧନ କରି କହିଲେ "ପ୍ରିୟେ ! ତୁମ୍ଭେ କେତେଦିନ ହେଲା ଭଲ ଶୋଇପାରି ନାହିଁ, ମୋହର ଏହି ଉପାଧାନ ଉପରେ ମସ୍ତକ ରଖି ଟିକିଏ ମୋ ନିକଟରେ ନିଦ୍ରା ଯାଅ" । ଏହା କହି ସେ ପ୍ରଶାନ୍ତମନରେ ଈଶ୍ୱରଙ୍କର ଗୁଣକୀର୍ତ୍ତନ କରିବାକୁ ଲାଗିଲେ ଏବଂ ତାହାଙ୍କର ଦୟା ସ୍ମରଣ କରୁ କରୁ ମହାନିଦ୍ରାଭିଭୂତ ହେଲେ ।

ମୃତ୍ୟୁସମୟକୁ ତାହାଙ୍କର ବୟସ ପଞ୍ଚଶବର୍ଷ ହୋଇଥିଲା । ଜଣେ ଦରିଦ୍ର କୃଷକସନ୍ତାନ ଆପଣାର ଧର୍ମବୁଦ୍ଧିବଳରେ ଦେଶଦେଶାନ୍ତରରେ କିପରି ପ୍ରତିଷ୍ଠା ଲାଭ କରିଥିଲେ ! ଅନ୍ତିମକାଳରେ ମହାତ୍ମା ଥିଓଡ଼ୋର ପାର୍କାର ଆପଣାର ପୁସ୍ତକାଗାରଟି ବୋଷ୍ଟନନଗରବାସୀଙ୍କୁ ପ୍ରଦାନ କରିଥିଲେ । ଏଥିରେ ଏକାଦଶଟି ବିଭିନ୍ନ ଭାଷାର ପ୍ରାୟ ସପ୍ତସହସ୍ର ପୁସ୍ତକ ସଞ୍ଚିତ ଥିଲା ।

---

## ପରୀକ୍ଷିତଙ୍କ ପ୍ରତି ଋଷିପୁତ୍ରଙ୍କର ଶାପ ।

ଅଭିମନ୍ୟୁଙ୍କର ପୁତ୍ର ପରୀକ୍ଷିତ ଜଣେ ମହା ପ୍ରତାପଶାଳୀ ଓ ପ୍ରଜାବତ୍ସଳ ରାଜା ଥିଲେ । ଦିନେ ସେ ମୃଗୟାବିନୋଦ-ମାନସରେ ଧନୁଃଶର ଧାରଣ ପୂର୍ବକ ବନ ମଧ୍ୟରେ ପ୍ରବେଶ କରି ଅନେକ ବନ୍ୟପଶୁ ବଧ କଲେ ଏବଂ ଶେଷରେ ଏକ ହୃଷ୍ଟପୁଷ୍ଟାଙ୍ଗ ହରିଣ ଦେଖି ତାହାପ୍ରତି ଅବ୍ୟର୍ଥ ହୋଇ ଶର ନିକ୍ଷେପ କଲେ । ଶରବିଦ୍ଧ ହରିଣଟି ବିକଳପ୍ରାଣରେ ଅରଣ୍ୟ ମଧ୍ୟକୁ ଦ୍ରୁତଗତିରେ ପଳାୟନ କଲା । ରାଜା ଆହତ ମୃଗର ଅନ୍ୱେଷଣରେ ବହୁସ୍ଥାନ ଭ୍ରମଣ କରି

ଅତ୍ୟନ୍ତ କ୍ଳାନ୍ତ ଓ ପିପାସାର୍ତ୍ତ ହୋଇପଡ଼ିଲେ ; ଏବଂ ଅବନ୍ୱେଷଣରେ ଏକ ଧ୍ୟାନ-ମଗ୍ନ ପୁରୁଷଙ୍କୁ ଦେଖି ପ୍ରଶ୍ନ କଲେ "ହେ ବ୍ରହ୍ମନ୍! ବାଣବିଦ୍ଧ ମୃଗଟିଏ ଏହି ମାର୍ଗରେ ପଳାୟନ କରିବାର ଦେଖିଅଛନ୍ତି କି ?" କିନ୍ତୁ ସେହି ପୁରୁଷ




ପରୀକ୍ଷିତଙ୍କ ପ୍ରତି ଶୃଙ୍ଗୀଋଷିଙ୍କର ଶାପ ।

ମୌନବ୍ରତାବଲମ୍ବୀ ସ୍ୱାମୀଙ୍କୁ ପ୍ରଶ୍ନର ଉତ୍ତର ଦେଲେ ନାହିଁ । ପରୀକ୍ଷିତ ଉତ୍ତର ନ ପାଇ ପୁନର୍ବାର ଉଚ୍ଚସ୍ୱରରେ ପ୍ରଶ୍ନ କଲେ ; କିନ୍ତୁ ସେଥିରେ ମଧ୍ୟ ଉତ୍ତର ନ ପାଇବାରୁ ନିଜକୁ ଅପମାନିତ ମନେକରି କ୍ରୋଧରେ ଅସ୍ଥିର ହୋଇପଡ଼ିଲେ । କ୍ଷୁଧା ଏବଂ ପିପାସା ତାହାଙ୍କର କ୍ରୋଧାଗ୍ନିକୁ ଦ୍ୱିଗୁଣିତ କରିଦେଲା । ରାଜା ନିଜ ଅବମାନନାର ପ୍ରତିଶୋଧ ସ୍ୱରୂପ ଭୂପତିତ ଏକ ମୃତସର୍ପ ଉକ୍ତ ପୁରୁଷଙ୍କର ଗଳାରେ ଲମ୍ବାଇଦେଲେ । କିନ୍ତୁ ସ୍ୱଭାବସହିଷ୍ଣୁ ଉକ୍ତ ମହର୍ଷି ତପସ୍ୟା ଦ୍ୱାରା କ୍ରୋଧାଦି ରିପୁମାନଙ୍କୁ ଜୟ କରିଥିବାରୁ ରାଜାଙ୍କ ପ୍ରତି ବାଚିକ କିମ୍ବା ମାନସିକ କୌଣସି ପ୍ରକାର ଅସଦ୍‌ବ୍ୟବହାର କଲେ ନାହିଁ । ରାଜା ମଧ୍ୟ କିୟତ୍‌କ୍ଷଣ ଅବସ୍ଥାନ ପରେ ଉକ୍ତ ତପସ୍ୱୀଙ୍କର କ୍ରୋଧଜନିତ କୌଣସି ଭାବାନ୍ତର ନ ଦେଖି ସ୍ୱ ନଗରକୁ ପ୍ରସ୍ଥାନ କଲେ ।

ଉକ୍ତ ମୁନିଙ୍କର ଶୃଙ୍ଗୀନାମକ ମହାତପା ତରୁଣବୟସ୍କ ଏକ ପୁତ୍ର ଥିଲେ । ଶୃଙ୍ଗୀ ତପସ୍ୟାବଳରେ ବାକ୍‌ସିଦ୍ଧି ଲାଭ କରିଥିଲେ ଏବଂ ତାହାଙ୍କର ତପସ୍ୟା-ପ୍ରଭାବ ଦର୍ଶନ କରି ତତ୍ରତ୍ୟ ମୁନିମାନେ ଭୀତ ଓ ବିସ୍ମିତ ହେଉଥିଲେ । ଦିନେ ଶୃଙ୍ଗୀ ନିଜ ସମାଧିସ୍ଥାନରେ ବସିଅଛନ୍ତି ଏମନ୍ତ ସମୟରେ କୃଶନାମକ ଜଣେ ତାହାଙ୍କର ପରମବନ୍ଧୁ ସେହି ସ୍ଥାନରେ ଉପସ୍ଥିତ ହୋଇ ତାହାଙ୍କର ପିତା ଗଳାରେ ମୃତସର୍ପ ବହନ କରିଥିବାର ଶୃଙ୍ଗୀଙ୍କୁ ଜ୍ଞାପନ କଲେ ।

ଶୃଙ୍ଗୀ ଏହି ସଂବାଦ ଶ୍ରବଣମାତ୍ରକେ ଅତ୍ୟନ୍ତ କ୍ରୋଧପରବଶ ହୋଇ ପରୀକ୍ଷିତଙ୍କୁ ନିମ୍ନଲିଖିତ ପ୍ରକାରେ ଭାବି ଅଭିସମ୍ପାତ ପ୍ରଦାନ କଲେ, "ଯେ ନରାଧମ ବିନା ଅପରାଧରେ ମୌନବ୍ରତୀ ମୋର ପିତାଙ୍କର ସ୍କନ୍ଧଦେଶରେ ମୃତ-ସର୍ପ ନିକ୍ଷେପ କରିଅଛି, ସେହି ପାପିଷ୍ଠ ଅଦ୍ୟଠାରୁ ସାତଦିନମଧ୍ୟରେ ବିଷଧର ସର୍ପ ଦଂଶନରେ ପ୍ରାଣ ତ୍ୟାଗକରି ପାପର ଉପଯୁକ୍ତ ଶାସ୍ତି ପ୍ରାପ୍ତ ହେଉ ।"

ତଦନନ୍ତର ଶୃଙ୍ଗୀ ପିତାଙ୍କ ନିକଟରେ ଉପସ୍ଥିତ ହୋଇ ତାହାଙ୍କ ସ୍କନ୍ଧ-ଦେଶରୁ ମୃତସର୍ପ ଉନ୍ମୋଚନ କଲେ ଏବଂ ପରୀକ୍ଷିତଙ୍କୁ ଏହି ଅବମାନନାର ପ୍ରତିଶୋଧ ନିମିତ୍ତ ଯେଉଁ ଅଭିଶାପ ପ୍ରଦାନ କରିଥିଲେ ତାହା ପିତାଙ୍କୁ ଜ୍ଞାପନ କଲେ । ମୁନି ପୁତ୍ରମୁଖରୁ ଏହି ଦାରୁଣ ଅଭିଶାପର ସଂବାଦ ଶ୍ରବଣ କରି

ମର୍ମାହତ ହୋଇଗଲେ, କିନ୍ତୁ ଅମୋଘ ଅଭିଶାପର କୌଣସି ପ୍ରତିକାର ନ ଦେଖି ପୁତ୍ରଙ୍କୁ ସମୀପକୁ ଡାକି କହିଲେ :—

"ଶୃଙ୍ଗୀ, ତୁମ୍ଭେ ଅତ୍ୟନ୍ତ ମୂଢ଼ତାର କାର୍ଯ୍ୟ କରିଅଛ । ମୋ ମନରୁ କଷ୍ଟ ଦୂର କରିବାକୁ ଯାଇ ମୋତେ ଅଧିକତର ଦାରୁଣ କଷ୍ଟରେ ନିକ୍ଷେପ କରିଅଛ । ମହାରାଜ ପରୀକ୍ଷିତ ଜଣେ ପରମଧାର୍ମିକ ଏବଂ ପ୍ରଜାବତ୍ସଳ ନରପତି ଅଟନ୍ତି । କ୍ଷୁଧାପିପାସାରେ ବିଭ୍ରାନ୍ତ ହୋଇ ଅଜ୍ଞାନତାବଶତଃ ମୋର ସ୍କନ୍ଧଦେଶରେ ମୃତସର୍ପ ନିକ୍ଷେପ କରିଅଛନ୍ତି । ସେଥିପାଇଁ ସେ ଏହି ଦାରୁଣ ଅଭିଶାପର ପାତ୍ର ନୁହନ୍ତି । ଦେଖ ଶୃଙ୍ଗୀ, କ୍ଷମାଶୀଳ ମୁନିମାନଙ୍କର କାହାରିକୁ ଅଭିଶାପ ପ୍ରଦାନ କରିବା ଉଚିତ ନୁହେଁ । ଯେଉଁମାନେ ଅନ୍ୟର ସାମାନ୍ୟ ଦୋଷରେ ଅତିଶୟ କ୍ରୁଦ୍ଧ ହୋଇ ତାହାର ଅନିଷ୍ଟ କାମନା କରନ୍ତି ସେମାନଙ୍କର ତପସ୍ୟା ବୃଥା, ଏବଂ ସେମାନଙ୍କର ସିଦ୍ଧି ଐହିକ ଅସ୍ଥାୟୀ ସିଦ୍ଧି ଅଟେ । ଯେଉଁମାନେ ଶରୀରସ୍ଥ ରିପୁମାନଙ୍କୁ ବଶୀଭୂତ କରି ନ ଥାନ୍ତି ସେମାନଙ୍କର ନିର୍ବାଣ ଅତ୍ୟନ୍ତ ଅସମ୍ଭବ ।"

"ବିଶେଷତଃ ପରୀକ୍ଷିତ କୌରବବଂଶର ଜଣେ ପ୍ରବଳପ୍ରତାପୀ ନରପତି ଅଟନ୍ତି । ତାହାଙ୍କର ଶାସନରେ ପ୍ରଜାବର୍ଗ ନିର୍ବିଘ୍ନରେ ଅବସ୍ଥାନ କରି ପରମ ସୁଖ ଶାନ୍ତି ଅନୁଭବ କରୁଅଛନ୍ତି । କୃଷି, ଶିଳ୍ପ, ବାଣିଜ୍ୟ ପ୍ରଭୃତିର ଉତ୍ତରୋତ୍ତର ଉନ୍ନତି ସାଧିତ ହେଉଥିବାରୁ ଦେଶର ଶ୍ରୀବୃଦ୍ଧି ହେଉଅଛି । ବନବାସୀ ଋଷିବୃନ୍ଦ ବିଷୟାଦି ଶତ୍ରୁମାନଙ୍କ ଅତ୍ୟାଚାରରୁ ଅବ୍ୟାହତି ଲାଭକରି ପରମଶାନ୍ତିରେ ବ୍ରହ୍ମାନନ୍ଦ ଉପଭୋଗ କରୁଅଛନ୍ତି ।"

"ହେ ଶୃଙ୍ଗୀ, ତୁମ୍ଭେ ରାଜଶକ୍ତି କଅଣ କେବେ ଭାବି ନାହିଁ । ତେଣୁ ଏପରି ଅନ୍ୟାୟ ସାହସିକତାର କାର୍ଯ୍ୟ କରିଅଛ । କିନ୍ତୁ ମନେରଖ, ରାଜଶକ୍ତି ଦେବଶକ୍ତିର ରୂପାନ୍ତର ମାତ୍ର । 'ଅଷ୍ଟାଭି ର୍ଲୋକପାଳାନାଂ ମାତ୍ରାଭି ର୍ନିର୍ମିତୋ ନୃପଃ', ଅର୍ଥାତ୍ ରାଜା ଇନ୍ଦ୍ରାଦି ଦେବତାମାନଙ୍କ ଅଂଶରେ ଜାତ, ତେଣୁ ଲୋକେ ରାଜାଙ୍କୁ ଦେବବୁଦ୍ଧିରେ ଅବଲୋକନ କରନ୍ତି । ରାଜଶକ୍ତି ମୁହୂର୍ତ୍ତକ ପାଇଁ ଅବାଧ ନ ରହିଲେ ପୃଥିବୀରେ ନାନାବିଧ ବିପ୍ଳବ ଉପସ୍ଥିତ ହେବ ;

ତୁମ୍ଭର ଏହି ଯମିତରଣ ମଧ୍ୟ ସମ୍ପୂର୍ଣ୍ଣ ଅସମ୍ଭବ ହୋଇପଡ଼ିବ । 'ରାଜ୍ଞା ପ୍ରତିଷ୍ଠିତୋ ଧର୍ମ୍ମଃ ଧର୍ମ୍ମାତ୍ ସ୍ୱର୍ଗଃ ପ୍ରତିଷ୍ଠିତଃ' । ଅର୍ଥାତ୍ ରାଜାଙ୍କ ଦ୍ୱାରା ଧର୍ମ୍ମ ପ୍ରତିଷ୍ଠିତ ହୁଏ, ଧର୍ମ୍ମବଳରେ ଲୋକେ ସ୍ୱର୍ଗଲାଭ କରନ୍ତି । ଅତଏବ ରାଜା ରାଜ୍ୟର ଏକମାତ୍ର ଶରଣ ଅଟନ୍ତି ।

"ବତ୍ସ ଶୃଙ୍ଗୀ, ତପୋବଳରେ ତୁମ୍ଭେ ଅଦ୍ଭୁତ ଶକ୍ତି ଲାଭ କରିଅଛ ସତ୍ୟ, କିନ୍ତୁ କେବଳ ଏହି ଶକ୍ତି ତୁମ୍ଭଙ୍କୁ ପରମ ସୁଖଶାନ୍ତି ପ୍ରଦାନ କରିପାରିବ ନାହିଁ । ଅତଏବ ଅଜଠାରୁ କ୍ରୋଧାଦି ରିପୁମାନଙ୍କୁ ଦମନ କରି ଶମ ଶିକ୍ଷା କର, ତାହାହେଲେ ନିର୍ମଳ ଆନନ୍ଦ ଓ ପରମ ଶାନ୍ତି ଉପଭୋଗ କରିବ ।

---

## ଆମିଷଭୋଜୀ ଚତୁଷ୍ପଦ ଜନ୍ତୁ ।

### (୧) ବିଡ଼ାଲଜାତୀୟ ।

ଅମିଷଭୋଜୀ ଚତୁଷ୍ପଦ ଜନ୍ତୁ ମଧ୍ୟରେ ବିଡ଼ାଲ ଏବଂ କୁକ୍କୁରଜାତୀୟ ପ୍ରାଣୀ ପ୍ରଧାନ ଅଟନ୍ତି । ବିଡ଼ାଲଜାତୀୟ ଚତୁଷ୍ପଦ ମଧ୍ୟରେ ସିଂହ, ବ୍ୟାଘ୍ର, ଚିତାବାଘ ଏବଂ ବିରାଡ଼ି ପ୍ରଭୃତି ପ୍ରଧାନ ; କୁକ୍କୁରଜାତୀୟ ମଧ୍ୟରେ କୁକ୍କୁର, ଭଲ୍ଲୁକ, ତରକ୍ଷୁ, ଶୃଗାଳ ପ୍ରଭୃତି ପ୍ରଧାନ ।

୧—ସିଂହ—ସମସ୍ତ ଚତୁଷ୍ପଦ ପ୍ରାଣୀଙ୍କ ମଧ୍ୟରେ ସିଂହ ସର୍ବାପେକ୍ଷା ଅଧିକ ପରାକ୍ରମଶାଳୀ ହୋଇଥିବାରୁ ତାହାଙ୍କୁ ପଶୁରାଜ କୁହାଯାଏ । ପୂର୍ବକାଳରେ ସିଂହ ଭାରତର ଉତ୍ତରାଂଶସ୍ଥ ଜଙ୍ଗଲ ଓ ପର୍ବତମାନଙ୍କରେ ବାସ କରୁଥିଲେ । ବର୍ତ୍ତମାନ ଭାରତରେ ସିଂହ ପ୍ରାୟ ଦେଖାଯାନ୍ତି ନାହିଁ । କେବଳ ଗୁଜରାଟର ଜଙ୍ଗଲମାନଙ୍କରେ ଅତି ଅଳ୍ପସଂଖ୍ୟାରେ ଦେଖାଯାନ୍ତି ।

ବର୍ତ୍ତମାନ ଅଫ୍ରିକାରେ ସିଂହ ଅନଳ୍ପପରିମାଣରେ ଦେଖାଯାନ୍ତି । ଏମାନେ କ୍ଷୁଦ୍ର କ୍ଷୁଦ୍ର ଗୁଳ୍ମ-ପରିପୂର୍ଣ୍ଣ ଶୁଷ୍କ ବାଲୁକାମୟ ମରୁପ୍ରଦେଶରେ ରହିବାକୁ ଭଲପାନ୍ତି । ଏମାନଙ୍କର ଶରୀର ଈଷତ୍ ପୀତବର୍ଣ୍ଣ । ସିଂହ ଯେଉଁ ସ୍ଥାନରେ ରହେ ସେହି ସ୍ଥାନର ବାଲୁକା ତାହାର ବର୍ଣ୍ଣସଙ୍ଗେ ସମାନ । ପୁଂସିଂହର

ଗ୍ରୀବାଉପରିଭାଗରେ ପ୍ରଚୁର ପରିମାଣରେ ଲମ୍ବା ଲମ୍ବା ଲୋମ ଅଛି । ଏହାକୁ କେଶର କହନ୍ତି । ଏହି କେଶର ଥିବାରୁ ସିଂହକୁ 'କେଶରୀ' ବୋଲାଯାଏ । ସିଂହୀର କେଶର ନାହିଁ ।

ସିଂହ ବିଡ଼ାଳଜାତୀୟ । ଏହାର ଲମ୍ବ ପ୍ରାୟ ପାଞ୍ଚହାତରୁ ଛଅ ହାତ ପର୍ଯ୍ୟନ୍ତ ହୁଏ ; ଉଚ୍ଚତା ପ୍ରାୟ ଦୁଇ କିମ୍ବା ଅଢ଼େଇ ହାତ ହେବ । ଏହାର ପଞ୍ଝା ଓ ଚକ୍ଷୁର ଗଠନପ୍ରଣାଳୀ ବିରାଡ଼ିର ପଞ୍ଝା ଓ ଚକ୍ଷୁର ଗଠନପ୍ରଣାଳୀ ସଙ୍ଗେ



ସିଂହ ।

ସମାନ ; କେବଳ ଆକୃତି ବୃହତ୍ତର । ସିଂହ ବିରାଡ଼ିପରି ରାତିରେ ଦେଖି ପାରେ । ଏହାର ଜିହ୍ୱା କର୍କଶ ଓ ଦନ୍ତୁର । ସିଂହ ଏହି ଜିହ୍ୱା ସାହାଯ୍ୟରେ ହାଡ଼ରୁ ମାଂସ ଉତ୍ତମରୂପେ ଚାଞ୍ଛି ନେଇପାରେ ।

ସିଂହର ପାଦତଳ ଅତି କୋମଳ । ସେ ଏହା ସାହାଯ୍ୟରେ ଅରଣ୍ୟ ମଧ୍ୟରେ ନିଃଶବ୍ଦରେ ଯାତାୟାତ କରିପାରେ । ସିଂହ ଯେତେବେଳେ କୌଣସି ଶିକାର ନ ପାଇ କ୍ଷୁଧାରେ ଆକୁଳ ହୁଏ ସେତେବେଳେ ମୁଖକୁ ଭୂପୃଷ୍ଠରେ ଲଗାଇ ଏପରି ଭୟଙ୍କର ଗର୍ଜ୍ଜନ କରେ ଯେ ବନ ମଧ୍ୟରେ ଲୁଚିରହିଥିବା ହରିଣ, ମୃଗ ପ୍ରଭୃତି ଜନ୍ତୁମାନେ ପ୍ରାଣଭୟରେ ଇତସ୍ତତଃ ପଳାୟନ କରିବାକୁ

ଲାଗନ୍ତି । ଏହି ଅବସରରେ ସିଂହ ସେମାନଙ୍କୁ ସହଜେ ଆକ୍ରମଣ କରି ନିଜର କ୍ଷୁଧା ନିବୃତ୍ତି କରେ ।

୨—ବ୍ୟାଘ୍ର—ଭାରତବର୍ଷର ପ୍ରାୟ ସମସ୍ତ ସ୍ଥାନରେ ବ୍ୟାଘ୍ର ଦେଖା-ଯାନ୍ତି । ଏମାନଙ୍କପରି ଭୟଙ୍କର, ନିଷ୍ଠୁର ଏବଂ ହିଂସ୍ର ପ୍ରାଣୀ ପ୍ରାୟ ଦେଖାଯାନ୍ତି ନାହିଁ । ପ୍ରତିବର୍ଷ ଏମାନଙ୍କ ଦ୍ୱାରା ଅସଂଖ୍ୟ ନରନାରୀ ଏବଂ ଗୃହପାଳିତ ପଶୁ



ବ୍ୟାଘ୍ର ।

କାଳଗ୍ରାସରେ ପତିତ ହୁଅନ୍ତି । ଯାହାହେଉ ବର୍ତ୍ତମାନ ସ୍ୱଦେଶୀୟ ଓ ବିଦେ-ଶୀୟ ଶିକାରୀମାନେ ବ୍ୟାଘ୍ରଶିକାର ଅତି ଗୌରବଜନକ ମନେକରି ସେମାନଙ୍କ ସଂଖ୍ୟା ହ୍ରାସ କରୁଥିବାରୁ ଭାରତର ଅଶେଷ କଲ୍ୟାଣ ସାଧିତ ହେଉଅଛି ।

ବ୍ୟାଘ୍ର ସିଂହପରି ବିଡ଼ାଳଜାତୀୟ ଅଟେ । ପ୍ରତ୍ୟେକ ଅଙ୍ଗପ୍ରତ୍ୟଙ୍ଗ ଓ ଶିକାରପ୍ରଣାଳୀରେ ବ୍ୟାଘ୍ର ଓ ବିରାଡ଼ିର ସାମଞ୍ଜସ୍ୟ ଅଛି । ବ୍ୟାଘ୍ର ଏବଂ ସିଂହ ମଧ୍ୟରେ ଏତିକିମାତ୍ର ପ୍ରଭେଦ ଯେ ସିଂହର ଆପାଦମସ୍ତକ ସମୁଦାୟ ଶରୀରର ବର୍ଣ୍ଣ ଏକ ପ୍ରକାର, କିନ୍ତୁ ବ୍ୟାଘ୍ରର ଶରୀରରେ କୃଷ୍ଣବର୍ଣ୍ଣିତ ପଟା ପଟା ଦାଗ ଅଛି । ସିଂହର କେଶର ଅଛି, ମାତ୍ର ବ୍ୟାଘ୍ରର କେଶର ନାହିଁ । ସିଂହଲାଞ୍ଜର ଅଗ୍ରଭାଗରେ ଗୋଟିଏ ଲୋମଗୁଚ୍ଛ ଅଛି, କିନ୍ତୁ ବ୍ୟାଘ୍ରଲାଞ୍ଜରେ ଗୁଚ୍ଛ ନାହିଁ । ସିଂହ ମରୁଭୂମି ବା ଉନ୍ମୁକ୍ତ ସ୍ଥାନରେ ରହିବାକୁ ଭଲପାଏ, ବ୍ୟାଘ୍ର ନିବିଡ଼

ଅରଣ୍ୟ ମଧ୍ୟରେ ବାସକରେ । ସିଂହ ଅତି ଗମ୍ଭୀର ଏବଂ ଉଦାସୀନ ପଶୁ ହୋଇଥିବ, ମାତ୍ର ବ୍ୟାଘ୍ର ଅତି ଚଞ୍ଚଳ ।

ଦକ୍ଷିଣ-ଭାରତର ବ୍ୟାଘ୍ର ଅପେକ୍ଷା ଉତ୍ତରଭାରତର ବ୍ୟାଘ୍ର ଅତିଶୟ ହୃଷ୍ଟପୁଷ୍ଟ ଏବଂ ବଳବାନ୍ । ସୁନ୍ଦରବନ ଏବଂ ହିମାଳୟ ପ୍ରଦେଶର ବ୍ୟାଘ୍ରମାନଙ୍କ ଦ୍ୱାରା ପ୍ରତିବର୍ଷ ବିଶେଷ ଅନିଷ୍ଟ ସାଧିତ ହେଉଅଛି । ବ୍ୟାଘ୍ରମାନଙ୍କ ସ୍ୱଭାବ ଅପେକ୍ଷା ବ୍ୟାଘ୍ରୀମାନଙ୍କର ସ୍ୱଭାବ ଅତ୍ୟନ୍ତ ଉଗ୍ର । ପ୍ରସବିନୀ ବ୍ୟାଘ୍ରୀର ସ୍ୱଭାବ ଅତ୍ୟନ୍ତ ପ୍ରଚଣ୍ଡତର ।

ଓଡ଼ିଶାର ପାର୍ବତ୍ୟ ଜଙ୍ଗଲମୟ ଗଡ଼ଜାତମାନଙ୍କରେ ଅନେକ ମହା ବଳବାଘ ଦେଖାଯାନ୍ତି । ସେମାନଙ୍କ ଦ୍ୱାରା ପ୍ରତିବର୍ଷ ଶତ ଶତ ଲୋକ ବିନଷ୍ଟ ହେଉଅଛନ୍ତି । ସମୟ ସମୟରେ ଏମାନଙ୍କ ଅତ୍ୟାଚାରରୁ ଗଡ଼ଜାତର ଯାତାୟାତ ପଥ ବନ୍ଦ ହୋଇଯାଏ । ଏହି ବ୍ୟାଘ୍ରମାନେ ପଥନିକଟସ୍ଥ ଜଙ୍ଗଲରେ ଲୁକ୍କାୟିତ ରହି ପଥିକମାନଙ୍କର ପ୍ରାଣ-ସଂହାର କରିଥାନ୍ତି ।

ବ୍ୟାଘ୍ର ଅତି ସାହସୀ ଏବଂ ନିର୍ଭୀକ । ଶତ୍ରୁ ପରାକ୍ରମଶାଳୀ ହେଲେ ମଧ୍ୟ ବ୍ୟାଘ୍ର କେବେହେଁ ଭୟରେ ପୃଷ୍ଠଭଙ୍ଗ ଦିଏ ନାହିଁ । ସମୟ ସମୟରେ ଏମାନେ ଲୋକାଳୟରେ ପ୍ରବେଶ କରି ଗୃହପାଳିତ ପଶୁମାନଙ୍କୁ ଆକ୍ରମଣ କରନ୍ତି । ଶୁଣାଯାଏ ଓଡ଼ିଶାର ଗଡ଼ଜାତମାନଙ୍କରେ ବ୍ୟାଘ୍ର ଦିବସରେ ମଧ୍ୟ ଜନାକୀର୍ଣ୍ଣ ଗ୍ରାମ ନିକଟରୁ ଗୃହପାଳିତ ପଶୁମାନଙ୍କୁ ଏବଂ କଦାଚିତ୍ ମନୁଷ୍ୟମାନଙ୍କୁ ହତ୍ୟା କରିଥାଏ ।

୧୯୧୫ ଖ୍ରୀଷ୍ଟାବ୍ଦର ମାଘମାସରେ ଢେଙ୍କାନାଳ ଓ ତାଳଚେର ରାଜ୍ୟର ସୀମାନ୍ତବର୍ତ୍ତୀ କୁଅଁଳୋ ନାମକ ଗ୍ରାମ ନିକଟରେ ଗୋଟାଏ ପ୍ରକାଣ୍ଡକାୟ ମହାବଳବାଘ ଦିନବେଳେ ଅନେକ ମନୁଷ୍ୟ ହତ୍ୟା କରୁଥିଲା । ଗ୍ରାମବାସୀମାନେ ତାହାର ପ୍ରତିକାର କରି ପାରିଲେ ନାହିଁ । ଦିନେ (ଫେବ୍ରୁମାସ ୪ ତାରିଖରେ) ସେ ବ୍ୟାଘ୍ର ଗ୍ରାମର ପଶ୍ଚାଦ୍‌ଭାଗରେ ଲୁଚି ରହିଥିଲା । ଗ୍ରାମର କେତେକ ଜଣ ସ୍ତ୍ରୀ ସେ ବାଘକୁ ଦେଖି ଭୟରେ ଗୃହକୁ ପଳାଇଆସି ପୁରୁଷମାନଙ୍କର

କର୍ଣ୍ଣଗୋଚର କରାଇଲେ । ଯୁବକମାନେ ଦଳବଦ୍ଧ ହୋଇ ଅସ୍ତ୍ର ଲଗୁଡ଼ ଧାରଣପୂର୍ବକ ବ୍ୟାଘ୍ରକୁ ଆକ୍ରମଣ କରିବାକୁ ଉଦ୍ୟତ ହେଲେ, କିନ୍ତୁ ବ୍ୟାଘ୍ରର ଭୟଙ୍କର ଗର୍ଜ୍ଜନରେ ସମସ୍ତେ ଭୀତ ହୋଇ ଇତସ୍ତତଃ ପଳାୟନ କଲେ, ଏବଂ ସେ ଗ୍ରାମବାସୀ ଜଣେ ବାଣୁଆ ତାହାର ବନ୍ଧୁସହିତ ବ୍ୟାଘ୍ରକବଳରେ ପଡ଼ିଲା । ଅଉ ତିନିଜଣ ଲୋକ ଗୋଟିଏ ଆମ୍ବଗଛରେ ଚଢ଼ି ଦୁଇଗୋଟି ଶାଖାର ଅଗ୍ରଭାଗରେ ବସିଲେ । ବ୍ୟାଘ୍ର କୋପାନ୍ୱିତ ହୋଇ ଲମ୍ଫପ୍ରଦାନପୂର୍ବକ ସେହି ଯୁବକଦ୍ୱୟଙ୍କୁ ଆକ୍ରମଣ କରିବା ଅଭିପ୍ରାୟରେ ଉକ୍ତ ବୃକ୍ଷଶାଖାଦ୍ୱୟର ମୂଳପ୍ରଦେଶରେ ବସିରହିଲା । କିନ୍ତୁ ତାହାର ଅଭିପ୍ରାୟ କାର୍ଯ୍ୟରେ ପରିଣତ ହୋଇ ପାରିଲା ନାହିଁ । ଗ୍ରାମବାସୀମାନେ ଅନନ୍ୟୋପାୟ ହୋଇ ତାଳଚେରରାଜ୍ୟର ରାଜାସାହେବଙ୍କ ନିକଟକୁ ସଂବାଦ ପଠାଇଲେ । ରାଜାବାହାଦୁର ଏହି ଲୋମହର୍ଷଣ ବ୍ୟାପାର ଶ୍ରବଣ କରିକ୍ଷଣି କ୍ଷଣମାତ୍ର ବିଲମ୍ବ ନ କରି ହସ୍ତିପୃଷ୍ଠରେ ଆରୋହଣପୂର୍ବକ ବନ୍ଧୁକହସ୍ତରେ ଉକ୍ତ ସ୍ଥାନରେ ଉପସ୍ଥିତ ହେଲେ । ବ୍ୟାଘ୍ରସ୍ଥିତ ବୃକ୍ଷଠାରୁ କିଞ୍ଚିତ ଦୂରରେ ଅବସ୍ଥାନ କରି ବ୍ୟାଘ୍ରକୁ ଲକ୍ଷ୍ୟ କରି ଗୁଳି ଏପରି ଭାବରେ ମାରିଲେ ଯେ, ଗୁଳି ସେ ତିନିଜଣଙ୍କର କିଛିମାତ୍ର ଅନିଷ୍ଟ ନ କରି ବ୍ୟାଘ୍ରର କର୍ଣ୍ଣମୂଳ ଭେଦକଲା । ବ୍ୟାଘ୍ର ତରୁକ୍ଷଣାତ୍ ଭୂତଳରେ ପତିତ ହୋଇ ପ୍ରାଣ ତ୍ୟାଗକଲା । ଯୁବକଦ୍ୱୟ ଆସନ୍ନମୃତ୍ୟୁମୁଖରୁ ନିଷ୍କୃତି ଲାଭ କରିବାରୁ ଗ୍ରାମବାସୀମାନେ ରାଜା ମହୋଦୟଙ୍କ ନିକଟରେ ଆନ୍ତରିକ କୃତଜ୍ଞତା ଜ୍ଞାପନପୂର୍ବକ ତାହାଙ୍କ ସ୍ଥିରଲକ୍ଷ୍ୟର ଭୂୟସୀ ପ୍ରଶଂସା କଲେ ।

୩—ଚିତାବାଘ—ଜଙ୍ଗଲମାନଙ୍କରେ ଅଉ ଏକପ୍ରକାର ବ୍ୟାଘ୍ର ଅଛନ୍ତି ସେମାନଙ୍କୁ ଚିତାବାଘ ବୋଲାଯାଏ । ଚିତାବାଘ ବ୍ୟାଘ୍ର ଅପେକ୍ଷା କ୍ଷୁଦ୍ରକାୟ କିନ୍ତୁ ଅତି ହିଂସ୍ର । ଚିତାବାଘର ଉପରିସ୍ଥ ଲୋମାବୃତ ଚର୍ମ୍ମ ପୀତବର୍ଣ୍ଣ ଓ କୃଷ୍ଣବର୍ଣ୍ଣ ଛୋପାଦ୍ୱାରା ଆବୃତ । ଏହା ଅତି ଚିକ୍କଣ ଏବଂ ସୁନ୍ଦର । ତାହାର ଚର୍ମ୍ମ ମଖମଲପରି ସୁକୋମଳ କରାଯାଇପାରେ । ଏହି କୋମଳୀକୃତ ଚର୍ମ୍ମ ବହୁମୂଲ୍ୟରେ ବିକ୍ରୀତ ହୁଏ । ଇଂଲଣ୍ଡରେ ଏହି ଚର୍ମ୍ମର ମୂଲ୍ୟ ଅନ୍ୟୂନ ପଞ୍ଚାଶତ ମୁଦ୍ରାଠାରୁ ଦ୍ୱିଶତ ମୁଦ୍ରା ପର୍ଯ୍ୟନ୍ତ ହୋଇଥାଏ । ଚିତାବାଘର ଜିହ୍ୱା

ଅତି କର୍କଶ । ଏମାନେ ଜିହ୍ୱାଦ୍ୱାରା ମନୁଷ୍ୟର ହସ୍ତ ଚାଟିଦେଲେ ହଠାତ୍ ରକ୍ତ ବାହାରିପଡ଼ିବ ।

ଚିତାବାଘମାନେ ଅନାୟାସରେ ବୃକ୍ଷାରୋହଣ କରିପାରନ୍ତି । ଏମାନେ ବଡ଼ ଚଞ୍ଚଳ ଏବଂ ପ୍ରାଣିବଧ କରିବାରେ ତତ୍ପର । ସିଂହ ଏବଂ ବ୍ୟାଘ୍ରପରି ଏମାନେ ମଧ୍ୟ ବିଡ଼ାଲଜାତୀୟ ଅଟନ୍ତି ।



ଚିତାବାଘ ।

ଚିତାବାଘ ଗୋ, ମେଷ, ହରିଣ ଏବଂ ମର୍କଟ ପ୍ରଭୃତି ଶିକାର କରନ୍ତି । ବ୍ୟାଘ୍ର ଅପେକ୍ଷା ଚିତାବାଘ ଅଧିକ ଧୂର୍ତ୍ତ ଓ ଚତୁର । ସୁବିଧା ପାଇଲେ ମନୁଷ୍ୟମାନଙ୍କୁ ମଧ୍ୟ ଆକ୍ରମଣ କରେ ।

ଆଉ ଏକଜାତୀୟ ଚିତାବାଘ ଅଛନ୍ତି ସେମାନଙ୍କୁ ଶିକାରୀ ଚିତା କୁହା-ଯାଏ । ଏମାନଙ୍କର ଶାରୀରିକ ଗଠନରେ ବିଡ଼ାଲଗଠନ ଅପେକ୍ଷା କୁକ୍କୁର-ଗଠନର ବେଶୀ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ଏମାନଙ୍କ ଶରୀର ସରୁ ଓ ଲମ୍ବା । ଶିକାରୀ ଚିତା ବ୍ୟାଘ୍ରପରି ଜଙ୍ଗଲରେ ଲୁଚି ଶିକାର କରେ ନାହିଁ । କୁକ୍କୁରପରି ମେଲା ଜାଗାରେ ଶିକାର କରେ । ଏମାନେ ଅଣ୍ଟା କମ୍ପା ସେହି-ପରି ଅନ୍ୟ କୌଣସି ଦ୍ରୁତଗାମୀ ପ୍ରାଣୀ ଅପେକ୍ଷା ଅଧିକ ବେଗରେ ଦୌଡ଼ି

ପାରନ୍ତି । ଏହି ହେତୁରୁ ଗୁଜରାଟର ରଜାମାନେ ଏମାନଙ୍କୁ ପୋଷି ଶିକାର ସମୟରେ ଆପଣାର ସାହାଯ୍ୟକାରୀ କରିଥାନ୍ତି ।

---

## ଆମିଷଭୋଜୀ ଚତୁଷ୍ପଦ ଜନ୍ତୁ ।

### (୨) କୁକ୍କୁରଜାତୀୟ ।

କୁକ୍କୁରଜାତୀୟ ସ୍ତନ୍ୟପାୟୀ ଆମିଷଭୋଜୀ ଚତୁଷ୍ପଦ ପ୍ରାଣୀମାନଙ୍କ ମଧ୍ୟରେ କୁକ୍କୁର, ତରକ୍ଷୁ, ଶୃଗାଳ, କୋକଶିଆଳ ପ୍ରଭୃତି ପ୍ରଧାନ । ଏହି ଶ୍ରେଣୀର ପ୍ରାଣୀମାନଙ୍କ ମଧ୍ୟରେ ଅନେକପ୍ରକାର ସାମଞ୍ଜସ୍ୟ ଲକ୍ଷିତ ହୁଏ । ସେମାନଙ୍କର ଶରୀର ଦୀର୍ଘ ଏବଂ ପାଦ ଲମ୍ବା । ସମସ୍ତେ ଦ୍ରୁତବେଗରେ ଦୌଡ଼ି ପାରନ୍ତି । ସିଂହ, ବ୍ୟାଘ୍ର ପ୍ରଭୃତି ବିଡ଼ାଲଜାତୀୟ ପ୍ରାଣୀମାନେ ଯେପରି ଛପି ଛପି ଶିକାର



କୁକ୍କୁର ।

କରନ୍ତି ଏମାନେ ସେପରି କରନ୍ତି ନାହିଁ । ଏମାନେ ପ୍ରାଣୀର ପଛରେ ଦୌଡ଼ି ଦୌଡ଼ି ପ୍ରଥମେ ସେ ପ୍ରାଣୀକୁ କ୍ଳାନ୍ତ କରିପକାନ୍ତି ଏବଂ ଉପରେ କ୍ରୋଧରେ ତାକୁ ଧରି ବଧକରନ୍ତି । ଏହି ଶ୍ରେଣୀର ପ୍ରାଣୀମାନଙ୍କ ନାସିକା ଦୀର୍ଘ ଏବଂ

ଘ୍ରାଣଶକ୍ତି ଅନ୍ୟାନ୍ୟ ଜନ୍ତୁମାନଙ୍କ ଘ୍ରାଣଶକ୍ତି ଅପେକ୍ଷା ପ୍ରବଳତର । ଏହି ଘ୍ରାଣଶକ୍ତି ପ୍ରଭାବରେ ଏମାନେ ପ୍ରାଣୀକି ନ ଦେଖି ମଧ୍ୟ ତାହାର ଅନୁସରଣ କରିପାରନ୍ତି । ଏମାନଙ୍କର ଦନ୍ତ ତୀକ୍ଷ୍ଣ ଏବଂ ମୁନିଆଁ ।

୧—କୁକ୍କୁର—ଅବହମାନକାଳରୁ କୁକ୍କୁର ମନୁଷ୍ୟର ବଶମ୍ବଦ ଭୃତ୍ୟ ଏବଂ ଏକାନ୍ତ ସହଚର ବୋଲି ବିଖ୍ୟାତ । ଏପରିକି ଗୋଟିଏ କୁକ୍କୁର ଧର୍ମପୁତ୍ର ଯୁଧିଷ୍ଠିରଙ୍କର ପ୍ରଧାନ ଭୃତ୍ୟ ଥିବାର ଆମ୍ଭେମାନେ ମହାଭାରତରେ ପ୍ରମାଣ ପାଉଁ । ଭାରତରେ ଅଧିକାଂଶ ହିନ୍ଦୁ କୁକ୍କୁରକୁ ଅପରିଷ୍କାର ଏବଂ ଅସ୍ପୃଶ୍ୟ ପ୍ରାଣୀ ବୋଲି ଘୃଣାକରନ୍ତି । ବାସ୍ତବରେ ବୁଲା କୁକ୍କୁରମାନଙ୍କର ଅବସ୍ଥା ଦେଖିଲେ ସେମାନଙ୍କ ପ୍ରତି ଘୃଣା ଜାତ ହେବା ସ୍ୱାଭାବିକ । କିନ୍ତୁ ପାଶ୍ଚାତ୍ୟ ଦେଶମାନଙ୍କରେ ଏବଂ ବିଶେଷତଃ ଇଂଲଣ୍ଡରେ କୁକ୍କୁରମାନଙ୍କୁ ବହୁଯତ୍ନରେ ପରିଷ୍କାରପରିଚ୍ଛନ୍ନ ରଖାଯାଏ ।

କୁକ୍କୁର ପ୍ରଥମେ ବନ୍ୟଜନ୍ତୁ ଥିଲା । ତତ୍ପରେ ମନୁଷ୍ୟ ତାକୁ ପାଳନ କରି ନିଜର ଭୃତ୍ୟରୂପରେ ପରିଣତ କରିଅଛି । ଅଦ୍ୟାପି ଅନେକ ବନ୍ୟ କୁକ୍କୁର ଅରଣ୍ୟରେ ଦେଖାଯାନ୍ତି ।

କୁକ୍କୁର ମନୁଷ୍ୟର ଅଶେଷ ଉପକାର ସାଧନ କରେ । ଗୃହଦ୍ୱାରକୁ ଉନ୍ମୁକ୍ତ ରହି ସ୍ୱାମୀର ଗୃହପାଖରେ ପ୍ରହରୀସ୍ୱରୂପ କାର୍ଯ୍ୟ କରେ । କୁକ୍କୁର ଜିମାରେ ଯେଉଁ ଦ୍ରବ୍ୟ ରଖାଯାଏ ସେ ତାହା ପ୍ରାଣପଣେ ଜଗିଥାଏ । କୁକ୍କୁର ଅତିଶୟ ପ୍ରଭୁଭକ୍ତ । ଏପରିକି ନିଜ ପ୍ରାଣଦାନରେ ପ୍ରଭୁର ପ୍ରାଣରକ୍ଷା କରିବାକୁ କୁଣ୍ଠିତ ହୁଏ ନାହିଁ ।

ଅନ୍ୟାନ୍ୟ ପ୍ରାଣୀମାନଙ୍କ ପରି କୁକ୍କୁରମାନଙ୍କର ଲୋମକୂପବାଟେ ଶରୀରରୁ ସ୍ୱେଦ ନିର୍ଗତ ନ ହୋଇ ଲାଳରୂପରେ ଜିହ୍ୱାରୁ ନିର୍ଗତ ହୁଏ । ତେଣୁ ଦୌଡିବା ସମୟରେ ଏମାନଙ୍କର ଜିହ୍ୱା ବାହାରକୁ ନିର୍ଗତ ହୋଇଥାଏ ।

କୁକ୍କୁରମାନେ ନାନା ଉପାୟରେ ମନର ଭାବ ପ୍ରକାଶ କରନ୍ତି— ଆନନ୍ଦିତ ହେଲାବେଳେ ଲାଙ୍ଗୁଳ ହଲାନ୍ତି ; କ୍ରୁଦ୍ଧ ବା କୁପିତ ହେଲାବେଳେ

ଗୁଁ ଗୁଁ ଶବ୍ଦ କରି ଦନ୍ତ ଦେଖାନ୍ତି ଏବଂ ଦୁଃଖିତ ହେଲାବେଳେ ମସ୍ତକ ଉତ୍ତୋଳନ କରି ଦୀର୍ଘସ୍ୱରରେ ଶବ୍ଦ କରନ୍ତି ।

କୁକ୍କୁରମାନେ ବଡ଼ ବୁଦ୍ଧିମାନ୍ । ପାଶ୍ଚାତ୍ୟ ଦେଶମାନଙ୍କରେ କୁକ୍କୁର ମେଷପାଳକମାନଙ୍କର ପ୍ରଧାନ ସହାୟ ।

୨—ତରକ୍ଷୁ (ଗଧିଆ ବାଘ)—ଭାରତବର୍ଷର ତରକ୍ଷୁ ଅପେକ୍ଷାକୃତ ବେଶୀ ବଳବାନ୍, ଧୂର୍ତ୍ତ ଏବଂ ଅନିଷ୍ଟକାରୀ । ଏମାନେ ଅନେକ ସମୟରେ ବଡ଼ ଅନିଷ୍ଟ ସାଧନ କରଥାନ୍ତି । ସ୍ୱଭାବତଃ ଭୀରୁ ହେଲେ ମଧ୍ୟ ଏମାନେ ଛେଳି, ମେଣ୍ଢା ଓ ବାଛୁରି ପ୍ରଭୃତି ଆକ୍ରମଣ କରନ୍ତି ଏବଂ ଅନେକ ସମୟରେ ମଧ୍ୟ କ୍ଷୁଦ୍ର କ୍ଷୁଦ୍ର ମାନବଶିଶୁ ନେଇ ପଳାୟନ କରନ୍ତି ।



ତରକ୍ଷୁ ।

୩—ଶୃଗାଳ—ଭାରତର ପ୍ରାୟ ସକଳ ସ୍ଥାନରେ ଶୃଗାଳ ପରିଦୃଷ୍ଟ ହୁଏ । ଏମାନଙ୍କର ଶରୀର ଅତି ରୂକ୍ଷ । ଏମାନେ ଭୂମିରେ ଗର୍ତ୍ତ କରି ବାସ କରନ୍ତି । ଏମାନେ ଗ୍ରାମର ଆବର୍ଜନା ଏବଂ ପ୍ରାଣୀର ମୃତଦେହ ଭକ୍ଷଣ କରି ଗ୍ରାମର ଚତୁଃସୀମା ପରିଷ୍କୃତ ରଖନ୍ତି ।

ସନ୍ଧ୍ୟା ଉପସ୍ଥିତ ହେଲେ ଏମାନେ ଗର୍ତ୍ତରୁ ବହିର୍ଗତ ହୋଇ ସର୍ବତ୍ର ଭ୍ରମଣ କରନ୍ତି । ଗୋଟିଏ ଶୃଗାଳ ଭୁକିବାକୁ ଆରମ୍ଭ କଲେ ଅନ୍ୟାନ୍ୟ ଶୃଗାଳମାନେ ମଧ୍ୟ ଭୁକିବାକୁ ଆରମ୍ଭ କରନ୍ତି । ଖାଦ୍ୟ ଅନୁସନ୍ଧାନରେ



ଶୃଗାଳ ।

ରାତିଯାକ ବୁଲି ବୁଲି ପ୍ରଭାତ ସମୟକୁ ପୁନର୍ବାର ନିଜ ନିଜ ଗର୍ତ୍ତକୁ ଫେରି ଆସନ୍ତି ।

---

## ଦ୍ରୌପଦୀ ସ୍ୱୟମ୍ବର ।

( ରସକୁଲ୍ୟା । )

୧

ପଞ୍ଚାଳନଗରୀ ଉତ୍ସବମୟୀ,
ଆସିଛନ୍ତି କେତେ ରାଜ୍ୟ ବିଜୟୀ
ରାଜା, ରାଜସୁତ, ରାଜନ୍ୟ ଆଜ
ଋଷି, ବ୍ରହ୍ମର୍ଷି, ଦ୍ୱିଜସମାଜ
ଉଜ୍ଜ୍ୱଳ ବେଶଭୂଷଣେ,
ଦ୍ରୁପଦ କୁମାରୀ କୃଷ୍ଣା ସୁକୁମାରୀ—
ସ୍ୱୟମ୍ବର ସଭାଙ୍ଗଣେ ।

୨

ଦ୍ୱାରେ ଦ୍ୱାରେ ପୂର୍ଣ୍ଣ— କୁମ୍ଭ-ସମ୍ଭାର,
ଲମ୍ବିତ ପଲ୍ଲବ- କୁସୁମ-ହାର,



ଦ୍ରୌପଦୀ ସ୍ୱୟମ୍ବର ।

ପ୍ରତି ଶୃଙ୍ଗାଟକେ    ଶୋହେ ତୋରଣ,
ସ୍ତମ୍ଭେ ସ୍ତମ୍ଭେ ଧ୍ୱଜା    ନାନା ବରଣ;
ଅଂହା କ ମଣ୍ଡପ ଶୋଭା,

ସୁଦ୍ରବ୍ୟ ସମ୍ଭାରେ    ମଣିରତ୍ନ ଦ୍ୱାରେ
ଜନ ମନ-ନେତ୍ର-ଲୋଭ !

୩

ଚଉପାଶେ ରମ୍ୟ    ପଉଖା ରାଜେ,
ସଭାଗୃହ ଶୋହେ    ବିବିଧ ସାଜେ,
ଗନ୍ଧବାୟୁ ସେକେ    ବାସ ପ୍ରସରେ,
ମଣିମୁକ୍ତାଜାଲ    ନୟନ ହରେ,
ସତେକି ସ୍ୱର୍ଗ ବିଭୂତି,
କାହିଁ ନୃତ୍ୟ ଗାନ    କାହିଁ ବାଦ୍ୟତାନ
କାହିଁ ବନ୍ଦିଜନ-ସ୍ତୁତି ।

୪

ଚନ୍ଦ୍ରାତପ ତଳେ    ମଞ୍ଚ ସଜ୍ଜିତ,
ଶୁକ୍ଳ ଦୃଢ଼-ତଳ୍ପ    ତହିଁ କଳ୍ପିତ,
ଏକେ ଏକେ ଆସି    ନରେନ୍ଦ୍ରଗଣ
ମଣ୍ଡିଛନ୍ତି ନିଜ    ଯୋଗ୍ୟ ଆସନ,
ସେ ଉତ୍ସବ ଦରଶନେ
ଅଳନ୍ଦେ ଗବାକ୍ଷେ    ତରୁହର୍ମ୍ୟ-ଶିଖେ
ରୁଣ୍ଡ ସର୍ବ ପୁରଜନେ

୫

ନୃପସୁତ ଜେମା    ଶୁଦ୍ଧସୁମନା
ରତ୍ନହାରକଣ୍ଠୀ    ଚନ୍ଦ୍ରବଦନା,
ଉଜ୍ଜ୍ୱଳବସନା    ହୋମ ଅନଳେ
ଦେଇ ପୂର୍ଣ୍ଣାହୁତି    ଭକ୍ତି-ନଶ୍ଚଳେ
ସଖୀ ସଙ୍ଗେ ବଜେ ଚଳେ,
ସତେ କି ସେ ଉମା    ନାରୀ-ନିରୁପମା
ସୁରସଙ୍ଗିନୀ ମଣ୍ଡଳେ !

୬

ସଭା ମଧ୍ୟେ ତହୁଁ    ଧୃଷ୍ଟଦ୍ୟୁମ୍ନ
ଉଭା ହୋଇ ଅଗ୍ରେ    ଭାଷେ ଏସନ,—
"ଶୁଣ ସମାଗତ    ନୃପତିଗଣ,
ଊର୍ଦ୍ଧ୍ୱେ ଏହି ଲକ୍ଷ୍ୟ,    ଏ ଶରାସନ,
ଭ୍ରମେ ଚକ୍ର ଲକ୍ଷ୍ୟ ତଳେ,
ଭେଦ ଚକ୍ରସନ୍ଧି    ବିନ୍ଧିବେ ଯେ ବୀର
ପଞ୍ଚଶର ଏକାଥରେ ।

୭

ହୋଇବ ତାଙ୍କର    ସହଧର୍ମିଣୀ
ଏହି ରୂପଗୁଣ-    ଶୀଳଶାଳିନୀ
ମୋହର ଭଗିନୀ    ଲକ୍ଷ୍ମୀପ୍ରତିମା
ପୁଣ୍ୟଶ୍ରୀମଣ୍ଡିତା    ପଞ୍ଚାଳଲଲାମା ;
କର ଏ ପଣ ପାଳନ ।"
ପୁଲକେ ପୂରିତ    ସର୍ବ ନୃପ-ଗାତ୍ର
ରୋମାଞ୍ଚିତ ଅପଘନ ।

୮

ମଦସ୍ରାବୀ ମତ୍ତ—    ମାତଙ୍ଗ ସମ
ଥୋକେ ସ୍ମରି ନିଜ    କୁଳବିକ୍ରମ
ଅନାଇଲେ ଅନ୍ୟ—    ଅନ୍ୟେ ତକ୍ଷଣେ
ଈର୍ଷା-କଲୁଷିତ    ତାମ୍ର ଲୋଚନେ,
ଉଠି କେ ପଡ଼ି ଅସକୁ,
ଯେବେ 'ନାରୀମଣି    ହେବ ମୋ ଘରଣୀ'
ଜଣାଇ ଦେଲେ ବଦନୁ ।

୯

ବାଜିଲା ଦୁନ୍ଦୁଭି      ମୁରଳୀ ବୀଣା
ବନ୍ଦୀଗୀତସ୍ୱର-      ହୃଦୟ-ବୀଣା,
ଉଠି କ୍ଷଣେ କ୍ଷଣେ      ରଣ ପ୍ରାଙ୍ଗଣେ
ଦେଖାଇଲେ ନିଜ      ଧାନୁଷ୍କପଣେ,
ରକ୍ଷି ନ ପାଇ ସ୍ୱ-ପଣ
ଆଶାଭଙ୍ଗ-ଦୁଃଖେ      ଲଜ୍ଜାନତ ମୁଖେ
କଲେ ଆସନ ଗ୍ରହଣ ।

୧୦

ପଡ଼ିଲେ କେ ଧନୁ      ନ ଧରୁ ଟୁଟିଲେ
ଗୁଣ ନ ଚଢ଼ାଇ      କେବା ବାହୁଡ଼େ,
ଅଗ୍ର ଖସିପଡ଼େ      ଅଙ୍ଗଦ କାର
କାର ବା କଙ୍କଣ      କଣ୍ଠ ହାର,
ତେଜି ଦୀର୍ଘଶ୍ୱାସ ତହିଁ,
ପାଣ୍ଡ୍ୟ ବଙ୍ଗୋତ୍କଳ      ବିଦେହ କୋଶଳ-
ନୃପେ ନିରେଖିଲେ ମହୀ ।

୧୧

ମାନୀ ଦୁର୍ଯ୍ୟୋଧନ      କର୍ଣ୍ଣ କୋପନ
ମଦ୍ରପତି ଶଲ୍ୟ      ଚେଦି ରାଜନ-
ଆଦି ଶୂରେ ଯହିଁ      ଭଜିଲେ ମ୍ଳାନି,
ଶେଷେ ପଞ୍ଚାଳେଶ      ଭଣିଲେ ବାଣୀ ;
"ଦେଖାଗଲା କ୍ଷତ୍ର-ବଳ,
ଦ୍ୱିଜକୁଳେ ଅନ୍ୟ      ଥିଲେ କେହି ଧନ୍ୟ
ଦେଖାଅ ବୀର୍ଯ୍ୟ-କୌଶଳ ।"

୧୨

ବସ୍ତ୍ର-ବେଣୀ ତହୁଁ    ଅର୍ଜ୍ଜୁନ ଶୃଣ୍ଡେ
ଉଭା ହେଲେ ଆସି    ସମର ଦାଣ୍ଡେ,
କୋଦଣ୍ଡ ଧାରଣେ    ତାଙ୍କୁ ଉଦ୍ୟତ
ଦେଖି ସବୁ କ୍ଷତ୍ର-    ମୁଖ ବିକ୍ଷତ ।
ବିପ୍ରେ କଲେ ଜୟଧ୍ୱନି,
କେହି ଉପହାସେ    କେବା ଅଟ୍ଟହାସେ
କମ୍ପାଇଦେଲେ ଅବନୀ ।

୧୩

ପ୍ରଦକ୍ଷିଣ କରି    ସେ ଶରାସନେ
ଇଷ୍ଟଦେବ ସ୍ମରି    ପାର୍ଥ ସୁମନେ
ଧରିଲେ କୋଦଣ୍ଡ    ଅନୁଭଣିରେ,
ତକ୍ଷଣେ ଚଢ଼ାଇ    ଗୁଣ ତହିଁରେ
ଯୋଖିଦେଲେ ପଞ୍ଚ ବାଣ,
ଚକ୍ରରନ୍ଧ୍ର ଭେଦ    ଲକ୍ଷ୍ୟକୁ ସେ ବିନ୍ଧି
ଭୂତଳେ କଲେ ଶୟାନ ।

୧୪

ହର୍ଷେ କରତାଳି    ଦେଲେ ଦର୍ଶକେ,
ହେଲା ପୁଷ୍ପବୃଷ୍ଟି    ପାର୍ଥ ମସ୍ତକେ,
ଥୋକେ ଉତ୍ତରୀୟ-    ଧ୍ୱଜା ଉଡ଼ାଇ
ଉଲ୍ଲାସ ଜଣାଣ    ଦେଲେ ଦେଖାଇ,
ବନ୍ଦୀଏ ଗାଇଲେ ଜୟ,
ଜୟ ତୂରୀ ବୀଣା    ମୁରଲୀ ବାଦନେ
ସେ କ୍ଷଣ କି ମଧୁମୟ !

୧୫

ପ୍ରୀତମନେ ନୃପ ଅନାଇ କ୍ଷଣେ
ବୀରଶ୍ରୀମଣ୍ଡିତ ପାର୍ଥ ବଦନେ,
ଭାଷନ୍ତେ ଦୁହିତା- ଉଦ୍ଦେ ଏସନ,
'ବର ବତ୍ସେ ! ଏହି ଯୋଗ୍ୟ ସୁଜନ' ।
ଦ୍ରୌପଦୀ ଲଜ୍ଜା-ମନ୍ଥରେ,
ମୂର୍ତ୍ତିମନ୍ତ ସ୍ନେହସାର- ସମ ହେମହାର
ଲମ୍ବାଇଦେଲେ ସେ ଗଳେ ।

୧୬

ପଡ଼ିଗଲା ସଭା- ମଧ୍ୟେ ଚହଲ,
ବାତ୍ୟା-ଅକୁଳିତ ସାଗର ଜଳ
ପଶ୍ଚାତେ ଅସିଲେ ମାଡ଼ି ସେ ସ୍ଥଳେ,
'ସ୍ଥିର ବଟୁ କିଏ କନ୍ୟାକୁ ହରେ ?'
ଦମ୍ଭେ ଥୋକେ ଏହା ଭାଷି,
ଅକ୍ରମିଲେ ପାର୍ଥେ ଯେଣ ସୈନ୍ୟ ସାର୍ଥେ
କନ୍ୟାହରଣ ମନାସି ।

୧୭

ମିଳିଲେ ପାଞ୍ଚାଳ ପାଣ୍ଡବ ବଳ,
ପ୍ରତିକୂଳ ହେଲେ ଆନ ସକଳ,
ମାତ ଦର୍ପେ ଭଙ୍ଗ ଦେଲେ ସେ ରଣେ,
ଚଳିଲେ ଦ୍ରୌପଦୀ କାନ୍ତ ଗହଣେ
ନିର୍ଭୟେ ଭାର୍ଗବାଶ୍ରମେ ;
କୃଷ୍ଣ ଯୋଗେଶ୍ୱର ଯେ ପକ୍ଷେ ସହାୟ,
ତହିଁ ବିଜୟ-ଶ୍ରୀ ରମେ ।

# ମାତୃଭାଷା ।

ମାତୃଭାଷା ମାତୃସମା,   ଏହା ତଥ୍ୟ ମଣି
'ସେବ ତାକୁ ଭକ୍ତିଭରେ   ଦିବସ ରଜନୀ' ।

କେତେ ଯତ୍ନେ ସ୍ନେହମୟୀ   ଜନନୀ ତୁମ୍ଭର
ବାଲ୍ୟେ ଶିଖାଇଲେ   ଯାହା ତୁମ୍ଭର ମଙ୍ଗଳ ।

ସେହି ବାଣୀ ଯୋଗେ   ପିତା-ଭ୍ରାତା-ବନ୍ଧୁଜନେ
ଅହା କେତେ ହିତକାରୀ   ଲଭିଲ ଭୁବନେ !

ବାକ୍‌ଶକ୍ତି ସ୍ଫୁରଣ ସଙ୍ଗେ   ଲଭି ଯେଉଁ ବାଣୀ
ଶିଶୁ ଶବ୍ଦ ଉଚ୍ଚାରିଲ,   ତାକୁ ବଡ଼ ଜାଣି ।

ରୋଗେ ଶୋକେ ବିପଦରେ   ଅବା ଅନ୍ତ-କ୍ଷଣେ
ଯେ ବାଣୀ ନାଚଇ ଥିବ   ରସନା-ପ୍ରାଙ୍ଗଣେ ।

ଯେ ଭାଷାରେ କର ସଦା   ଧ୍ୟାନ ବା ମନନ
ସେ ଆଦିଜନନୀ ସହ   ନିଗୂଢ଼ ବନ୍ଧନ ।

ଯେ ବାଣୀ-ଶରଣ   ପଶି କେତେ କୃତୀ ଜନେ
ଅକ୍ଷୟ ଅମର କୀର୍ତ୍ତି   ରଖିଲେ ଭୁବନେ ।

ଯେ ଭାଷା-ଅମୃତ ମୁଖୁଁ   ନୋହିଲେ ନିଃସୃତ
ଜାତିପଣ ତବ କେଣେ   ହୋଇବଟି ହୃତ ।

ତହୁଁ ବଳି ଶ୍ରେଷ୍ଠ ଆଉ   କି ଅଛି ଭୁବନେ ?
ତାହାର ମଙ୍ଗଳେ ସଦା   ଲାଗ ପ୍ରାଣପଣେ ।

## ଶରତ-ପ୍ରଭାତ ।

୧

ଛାଡ଼ି ବନ୍ଧୁ ନଗର ଚହଳ,
ଯିବା ଚାଲି ଯେଉଁ ସ୍ଥାନେ    ଗୋପାଳ କୃଷକମାନେ
ଆନନ୍ଦେ କାଟନ୍ତି ଦିନ, ସୁଖେନ୍ଦୁ ବିମଳ
ଯାହାଙ୍କର ଚିତ୍ତାକାଶେ ସର୍ବଦା ଉଜ୍ଜ୍ୱଳ ।

୨

ବନ୍ଧୁ, ଏହି ଶରତ ସମୟ,
ଗ୍ରାମରେ ବୁଲିବା ଆଜ,    ଦେଖିବା କେମନ୍ତେ ସାଜ
ପ୍ରକୃତିସୁନ୍ଦରୀ ହରେ ଭାବୁକ ହୃଦୟ,
କରିବା ବିବିଧ ଗଳ୍ପେ ଚିତ୍ତ ବିନମୟ ।

୩

ଝିଲ୍ଲୀଶୋଭି ବଳଇ ବଚନ,
ଦିନମଣି ପ୍ରତ୍ୟାଗମେ    ଶତ ଶତ ବିହଙ୍ଗମେ
କରନ୍ତି ସଙ୍ଗୀତ ଯେହ୍ନେ ବୈତାଳିକଗଣ,
ଦେଖି ଅରାତି-ବିଜୟୀ ଭୂପ ଆଗମନ ।

୪

ଏବେ ମନ୍ଦସମୀର ସଞ୍ଚରେ,
ଚୁମ୍ବି ଫୁଲ ନଦୀ ପର୍ଣ୍ଣେ    ସଦା ପ୍ରେମକାନ୍ତି ବର୍ଣ୍ଣେ
ଲକ୍ଷେ ଭ୍ରମ୍ୟେ ଅହା ତହୁଁ ଫୁଲ ଥରଥରେ,
ନଦୀ କଳକଳେ, ପୁଣି ପର୍ଣ୍ଣ ମରମରେ ।

୫

ବନେ ଭ୍ରମେ ବିଭ୍ରମୀ ଭ୍ରମର,
ଯେ ପୁଷ୍ପର ଗନ୍ଧଧନ    ହରଥାଏ ସମୀରଣ,
ଘୃଣାଇରେ ଡେଙ୍କେ ତାକୁ ଯେସନ ନାଗର
ଦେଖି ତାର ବନ୍ଧୁତାର କୁଳଟା ବେଶର ।

୬

ନରେଖିବା କୁସୁମନନ୍ଦନର,
ଫୁଟେ ନବସମ୍ଭୂଳ ରମ୍ୟ କୁମୁଦ କମଳ
ଅସିତା ଅପରାଜିତା ମାଲତୀ ସୁନ୍ଦର
ସୁକୁମାର ଶେଫାଳିକା ଧବଳ ଟଗର ।

୭

କି ସୁନ୍ଦର କେଦାର ଶ୍ୟାମଳ !
ଯହିଁ ଶସ୍ୟାବଳୀ ରଙ୍ଗେ ଖେଳୁଣ୍ଡି ଥାନ୍ତି ତରଙ୍ଗେ,
ତା ଦେଖି ସରଳେ ଗାଏ କୃଷକ ସରଳ,
କିଏ ସୁଖୀ ନୁହେ ଆଶା ହୋଇଲେ ସଫଳ ?

୮

ହାସ୍ୟମୟୀ ଉଷା ଆଗମନେ
ତେଜଣ ବେଗେ ପହୁଡ଼ ଗୋଧନ ଘେନି ଗଉଡ଼
ବଜାଇ ବଜାଇ ବଂଶୀ ସୁଲଳିତ ସ୍ୱନେ
ଗୋଷ୍ଠକୁ ଗମଇ ଧୀରେ ଅହ୍ଲାଦିତ ମନେ ।

୯

କାଖେ ଘେନି ସଲିଳକଳସ
ପଲ୍ଲୀ ସୀମନ୍ତିନୀଗଣ ରଙ୍ଗେ କରନ୍ତି ଗମନ,
ଅନାଇ ଜଳଦର୍ପଣେ ମୁଖତାମରସ
ମୁଗ୍ଧ ହୋଇ ନିଜ ରୂପେ ଲଭନ୍ତି ହରଷ ।

୧୦

ନଦୀକୂଳେ ସରୋବରତୀରେ,
ସରଳା କୁମାରୀଚୟ ତୋଳି ନୀଳ କୁବଳୟ
ପୂଜନ୍ତି ଦେବ ଶଙ୍କରେ ବାଲୁକାମନ୍ଦିରେ,
ଜଳାର୍ଦ୍ର କୁନ୍ତଳ ଧୀରେ କମ୍ପଇ ସମୀରେ ।

(ମଧୁସୂଦନ)

# ବାତାବର୍ତ୍ତ ।

## (୧)

ପ୍ରଖର ସୂର୍ଯ୍ୟୋତ୍ତାପର ତାରତମ୍ୟ ଯୋଗୁଁ ସମୁଦ୍ରଜଳରେ ଯେପରି ସ୍ରୋତ ଏବଂ ଆବର୍ତ୍ତର ଉତ୍ପତ୍ତି ହୋଇଥାଏ, ବାୟୁମଣ୍ଡଳରେ ମଧ୍ୟ ସେହିପରି ଭୀଷଣ ଆବର୍ତ୍ତ ସଂଘଟିତ ହୋଇଥାଏ । ଏହି ବାତାବର୍ତ୍ତ ଜଳ ଓ ସ୍ଥଳ ଉଭୟରେ ସ୍ୱପ୍ରଭାବ ବିସ୍ତାର କଲେହେଁ ସାଗରଗର୍ଭହିଁ ଏହାର ପ୍ରଧାନ ଉତ୍ପତ୍ତିସ୍ଥଳ । ବର୍ଷେ ବର୍ଷେ ଏହି ମହାବର୍ତ୍ତ ସମୁଦ୍ରପ୍ରଦେଶରୁ ସମୁତ୍ଥିତ ହୋଇ ଉପକୂଳବର୍ତ୍ତୀ ଦେଶମାନଙ୍କର ଉଚ୍ଛେଦ ସାଧନ କରେ । ଏ ଦେଶରେ ମଧ୍ୟ ଭୀଷଣ ବାତାବର୍ତ୍ତଜନିତ ଅନର୍ଥ ଯଥେଷ୍ଟ ଘଟିଅଛି । ମହୋଦଧି ବା ବଙ୍ଗସାଗର ଏହି ବାତାବର୍ତ୍ତର



ବାତାବର୍ତ୍ତ ।

ପ୍ରସୂତି । ଏହାର ଉଦୟ ହେବାମାତ୍ରେ ସମୁଦ୍ର ଉତ୍ତାଳ ତରଙ୍ଗମାଳାରେ ଭୀଷଣ ଆକାର ଧାରଣ କରେ । ମନ୍ଦରଶୈଳ ପ୍ରାୟ ଅତ୍ୟୁନ୍ନତ ଜଳସ୍ତମ୍ଭମାନ ଊର୍ଦ୍ଧ୍ୱକୁ ଉଠି ଶତ ଶତ ପୋତ ଉତ୍କ୍ଷିପ୍ତ ଓ ବିଧ୍ୱସ୍ତ କରିପକାଏ । ସ୍ଫୀତ ସମୁଦ୍ରଜଳ

ନଦୀମୁଖରେ ପ୍ରବେଶକରି ପ୍ରଳୟକାଳୀନ ଜଳପ୍ଲାବନର ଆତଙ୍କ ଲୋକମଧ୍ୟରେ ଜନ୍ମାଇଦେବ । ଲକ୍ଷ ଲକ୍ଷ ବୃକ୍ଷଗୃହାଦି ଭୂମିଶାୟୀ କରି କ୍ଷଣକେ ମନୋହର ଧରାପୃଷ୍ଠକୁ ଶ୍ରୀଭ୍ରଷ୍ଟ କରିଦେବ । ଅନକ୍ୟ ପଞ୍ଚଶବର୍ଷ ପୂର୍ବେ ଯେଉଁ ମହାବାତାବର୍ତ୍ତ ମହୋଦଧି ଗର୍ଭରୁ ଉଠି ବଙ୍ଗଦେଶର ଅନେକ ଅଂଶକୁ ଛାରଖାର କରିପକାଇ-ଥିଲା ତାହାର ଲୋମହର୍ଷଣ ବର୍ଣ୍ଣନା ପଢିଲେ ପ୍ରାଣ ଅତଙ୍କାକୁଳ ହୁଏ ଏବଂ ପ୍ରକୃତ ଆଗରେ ସର୍ବବିଧ ମାନୁଷୀ ଶକ୍ତି ଯେ ନିତାନ୍ତ ତୁଚ୍ଛ ଏବଂ ଅକିଞ୍ଚିତ୍କର, ଏହା ଦୃଢ଼ରୂପେ ଅନୁଭୂତ ହୁଏ ।

ଖ୍ରୀଷ୍ଟୀୟ ୧୮୬୪ ଅବ୍ଦର ଅଶିନ ମାସରେ ଦିନେ ପୂର୍ବାହ୍ନରେ ଏହି ବାତାବର୍ତ୍ତ ସମୁଦ୍ରଅରୁ ମହାବେଗରେ ପ୍ରବାହିତ ହେବାକୁ ଲାଗିଲା । ଉପକୂଳ-ବର୍ତ୍ତୀ ଭୂଖଣ୍ଡମାନଙ୍କରେ ପ୍ରଳୟକାଣ୍ଡ ଘଟାଇ କ୍ରମେ ପୂର୍ବୋତ୍ତର ବଙ୍ଗ ଆକ୍ରମଣ କରିବାକୁ ପ୍ରଧାବିତ ହେଲା ଏବଂ ଶେଷରେ ଏକ ଉନ୍ନତ ପର୍ବତଦେହରେ ଅଘାତପ୍ରାପ୍ତ ହେବାରୁ ଏହା କ୍ରମଶଃ ଦୁର୍ବଳ ହୋଇ ପରିଶେଷରେ ବିଲୟ-ପ୍ରାପ୍ତ ହେଲା । ଏହି ଅବର୍ତ୍ତ ଯୋଗେ ସମୁଦ୍ରଜଳ ସ୍ଫୀତ ହୋଇ ପ୍ରାୟ ୨୦ ହାତ ଉପରକୁ ଉଠିଥିଲା ଏବଂ ସାଗରସଂଗତା ନଦୀମାନଙ୍କରେ ଅକାଳବନ୍ୟା ଉପ-ସ୍ଥିତ ହୋଇ ତଟସ୍ଥିତ ଜନପଦମାନଙ୍କୁ ପ୍ଲାବିତ କରିଥିଲା । ଏହି ମହାଝଟିକାରେ କେତେ ବନ ଉପବନ, କେତେ ଗ୍ରାମ ନଗର, କେତେ ସୌଧକୁଟୀର ଯେ ଭଗ୍ନ, ବିଦୀର୍ଣ୍ଣ ଓ ଧରାଶାୟୀ ହୋଇଥିଲା ତାହାର ଇୟତ୍ତା ହୋଇ ନାହିଁ । କେତେ କେତେ ମନୁଷ୍ୟ, କେତେ କେତେ ଗୋମହିଷାଦିପ୍ରାଣୀ ଯେ ହତ, ଆହତ ଓ ମୁମୂର୍ଷୁ ଦଶା ପ୍ରାପ୍ତ ହୋଇଥିଲେ ତାହା ମଧ୍ୟ ସଂଖ୍ୟା କରାଯାଇ ନାହିଁ ।

ଦିନବେଳେ ଏହି ମହାଝଟିକା ପ୍ରବାହିତ ହୋଇଥିବାରୁ ଅନେକ ଲୋକ ଅପମୃତ୍ୟୁ-ସଙ୍କଟରୁ ରକ୍ଷା ପାଇଥିଲେ ; ତଥାପି ଅନେକେ ଅକାଳମୃତ୍ୟୁ ଗ୍ରାସରେ ପତିତ ହୋଇଥିଲେ । କଲିକତା ମହାନଗରୀର ରାଜମାର୍ଗ ନାନାବୃକ୍ଷପାତ ଏବଂ ଅଟ୍ଟାଳିକାମାନଙ୍କର ଚୂର୍ଣ୍ଣୀକୃତ ଭଗ୍ନାବଶେଷରେ ରୁଦ୍ଧପ୍ରାୟ ହୋଇଥିବାରୁ ଲୋକମାନଙ୍କର ଗମନାଗମନ ସ୍ଥଗିତ ହୋଇଯାଇଥିଲା । ସନ୍ଧ୍ୟାପୂର୍ବରୁ ଝଟିକା ଶାନ୍ତଭାବ ଧାରଣ କରିବାରୁ ନଗରବାସୀମାନେ ଇତସ୍ତତଃ ପଳାୟିତ ଆତ୍ମୀୟ

ସ୍ଥଳନମାନଙ୍କ ଅନୁସନ୍ଧାନରେ ପ୍ରବୃତ୍ତ ହୋଇଥିଲେ । ସହସ୍ର ସହସ୍ର ଦରିଦ୍ର ଶ୍ରମଜୀବୀ ଏହି ବାତ୍ୟାପୀଡ଼ନରେ ଏକାବେଳେ ନିରାଶ୍ରୟ ହୋଇପଡ଼ିଥିଲେ । ଚତୁର୍ଦ୍ଦିଗରେ କେବଳ ହାହାକାରନାଦରେ ନଗର ପୂର୍ଣ୍ଣ ହୋଇଯାଇଥିଲା । କଲିକତାର ଇଡେନଗାର୍ଡ଼େନ ନାମକ ମନୋହର ଉଦ୍ୟାନ ନାନା ବୃକ୍ଷପାତ ଓ ଶାଖାପତ୍ର ଛେଦରେ ନିତାନ୍ତ ହତଶ୍ରୀ ହୋଇଯାଇଥିଲା । ଗଙ୍ଗାର ଅପରପାରବର୍ତ୍ତୀ ଶିବପୁରର ରାଜକୀୟ ମହୋଦ୍ୟାନ ଏକାବେଳକେ ଶ୍ରୀଭ୍ରଷ୍ଟ ହୋଇପଡ଼ିଥିଲା । ବହୁବ୍ୟୟରେ ସଂଗୃହୀତ ଏବଂ ବହୁଯତ୍ନରେ ସଂରକ୍ଷିତ ବୃକ୍ଷାବଳୀ ଏହି ବାତ୍ୟାପ୍ରହାରରେ ବିଧ୍ୱସ୍ତ ହୋଇଯାଇଥିଲା । ନଗରର ଶତଶତ ଉନ୍ନତ ସୌଧ ଭଗ୍ନ ଏବଂ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯାଇଥିଲା । କେତେ କେତେ ଅଟ୍ଟାଳିକା ଏବଂ ମୃଣ୍ମୟ ଗୃହମାନ ପତିତ ସ୍ତୂପାକାର ଧାରଣ କରିଥିଲା । କଲିକତାର ସୁବିଖ୍ୟାତ ସେଣ୍ଟପଲ୍ ନାମକ ଉନ୍ନତ ଗୀର୍ଜାଗୃହର ଉପରିସ୍ଥ ଗୁମ୍ବଜ ଏଥିରେ ବିପର୍ଯ୍ୟସ୍ତ ହୋଇପଡ଼ିଥିଲା । ତାହାଛଡ଼ା କେତେ ହିନ୍ଦୁ ମୁସଲମାନ ଧର୍ମମନ୍ଦିର ମଧ୍ୟ ଶୋଚନୀୟ ଅବସ୍ଥା ପ୍ରାପ୍ତ ହୋଇଥିଲା । ଗଙ୍ଗା ଉଚ୍ଛଳତରଙ୍ଗମାଳାରେ ଭୀମମୂର୍ତ୍ତି ଧାରଣ କରି ବକ୍ଷଃସ୍ଥିତ ପୋତାବଳୀକୁ ଇତସ୍ତତଃ ବିକ୍ଷିପ୍ତ କରିଦେଇଥିଲା । ତହିଁପରଦିନ ପ୍ରଭାତରେ ଦେଖାଗଲା ଗଙ୍ଗାବକ୍ଷ କିଞ୍ଚିତ୍ ଶାନ୍ତଭାବ ଧାରଣ କରିଥିଲେହେଁ ଅପରପାରକୁ ଯିବାପାଇଁ ସେଥିରେ ଖଣ୍ଡିଏ ନୌକା ସୁଦ୍ଧା ଭାସମାନ ନାହିଁ । ଅଧିକାଂଶ ସୁଦୂର ତଟଦେଶରେ ପ୍ରକ୍ଷିପ୍ତ, କେତେକ ଭଗ୍ନ, କେତେକ ଜଳମଗ୍ନ, କେତେକ ବିପର୍ଯ୍ୟସ୍ତ ଏବଂ କେତେକ ଛିନ୍ନ-ଗୁଣସ୍ତମ୍ଭ ହୋଇ ଏକତ୍ର ସ୍ତୂପୀକୃତ ହୋଇଥିଲା । ନଦୀକୂଳବର୍ତ୍ତୀ କେତେକ ଅଟ୍ଟାଳିକା ମଧ୍ୟ ନଦୀଗର୍ଭରେ ପତିତ ହୋଇଥିଲା । ବିଧ୍ୱସ୍ତ ପୋତାବଳୀ ମଧ୍ୟରୁ କେତେକ ବଡ଼ ପୋତରେ ଦୂରଦେଶ ଯାତ୍ରୀ ଥିଲେ ; ଅନେକ ପ୍ରବାସୀ ହିନ୍ଦୁ ଦକ୍ଷିଣ ଦୁର୍ଗାପୂଜାର ମହୋତ୍ସବ ଉପଲକ୍ଷରେ କେତେ ଆଶା ପୋଷି ସ୍ୱଗୃହ ଅଭିମୁଖରେ ଯାତ୍ରା କରୁଥିଲେ । ସେଥିମଧ୍ୟରୁ ଅନେକେ ଗଙ୍ଗାଗର୍ଭରେ ସମସ୍ତ ଆଶାସହ ପ୍ରାଣ ବିସର୍ଜନ କରିଥିଲେ ।

ଉକ୍ତ ନଦୀର ଦକ୍ଷିଣପାର୍ଶ୍ୱବର୍ତ୍ତୀ ହାବଡ଼ାରେ ମଧ୍ୟ ସେହିପରି ଦୁରବସ୍ଥା ।

ବରଂ ହାବଡ଼ାଜିଲ୍ଲାରେ ଅଧିକ ଲୋକ ଏବଂ ଗବାଦିପଶୁ କାଳଗ୍ରାସରେ ପତିତ ହୋଇଥିଲେ । ମେଦିନୀପୁର ଜିଲ୍ଲାରେ ଏ ଝଟିକାର ପ୍ରତାପ ଅଧିକ ଭୀଷଣ ହୋଇଥିଲା । ଗୃହବୃକ୍ଷାଦି ପତନର କଥା ତେଣିକି ଥାଉ, ଏଥିରେ ପ୍ରାୟ ବିଂଶତିସହସ୍ର ଲୋକ ଏବଂ ତାହାର ଦ୍ୱିଗୁଣ ଗୃହପାଳିତ ପଶୁ ମୃତ୍ୟୁ-ମୁଖରେ ପତିତ ହୋଇଥିଲେ । ଓଡ଼ିଶାର ଉତ୍ତରାଂଶରେ ମଧ୍ୟ ଏ ଝଟିକା ପ୍ରବଳ-ଭାବରେ ପ୍ରବାହିତ ହୋଇ ଅସଂଖ୍ୟ ଲୋକଙ୍କୁ ନିରନ୍ନ ଏବଂ ନିରାଶ୍ରୟ କରି-ଦେଇଥିଲା । ଯେଉଁମାନେ ଏ ଦୃଶ୍ୟ ସ୍ୱଚକ୍ଷୁରେ ଦେଖିଥିଲେ ସେମାନେ ଅଦ୍ୟାପି ତାହା ବିସ୍ମୃତ ହୋଇ ପାରିନାହାନ୍ତି । ମହାନଦୀ ଓ କାଠଯୋଡ଼ୀ ନଦୀଦ୍ୱୟ ବନ୍ୟାପରିପ୍ଲୁତ ହୋଇ କଟକନଗରୀକୁ ଜଳସାତ୍ କରିଦେବାକୁ ବସିଥିଲା । ନଗରବାସୀ ଭୀଷଣ ଆତଙ୍କରେ ଆର୍ତ୍ତନାଦ କରୁଥିଲେ । ବାସ୍ତବିକ ସାଲ (୧୮୭୨) ବନ୍ୟାର ଦାରୁଣସ୍ମୃତି ଅଦ୍ୟାପି କାହାରି କାହାରି ହୃଦୟରେ ଜାଗରୁକ ଅଛି ।

ଗୋଟିଏ ଦିନରେ ପ୍ରକୃତିର କରାଳମୂର୍ତ୍ତି ବର୍ଣ୍ଣନ କରି ବିଶାଳ ଜନପଦର ଅଧିବାସୀ ସଶଙ୍କଭାବରେ ଆପଣା ଆପଣାର ମରଣମୁହୂର୍ତ୍ତ ଗଣନା କରିବାକୁ ଲାଗିଥିଲେ । ଆମୋଦ ଉତ୍ସବ କରିବା ତେଣିକି ଥାଉ, ଆହାର ଆଶ୍ରୟ ଅଭାବରେ ସମସ୍ତେ ସ୍ତବ୍ଧଭାବ ଧାରଣ କରି ଏକମୁଖରେ ଭଗବାନଙ୍କର କୃପା ଭିକ୍ଷା କରୁଥିଲେ । ଏହି ମହା ବିପତ୍ପାତରେ ମୃତ ଲୋକସଂଖ୍ୟା ପ୍ରାୟ ଅର୍ଦ୍ଧ-ଲକ୍ଷରୁ ଏବଂ ଗବାଦି ପଶୁର ସଂଖ୍ୟା ପ୍ରାୟ ସାର୍ଦ୍ଧ ଏକଲକ୍ଷରୁ ଊଣା ହେବ ନାହିଁ, ଏହା ଅନୁମାନ କରାଯାଇଅଛି । କିନ୍ତୁ ଏଥିରେ ଦେଶର ଯେ କେତେ ଧନ କ୍ଷୟ ହୋଇଅଛି, ତାହା ନିରୂପଣ କରାଯାଇ ନାହିଁ । ପ୍ରକୃତିର ସେହି କର୍କଶ କଶାଘାତରେ କେତେ ଧନଶାଳୀ ଧନହୀନ ହୋଇଅଛନ୍ତି । କେତେ ସମୃଦ୍ଧିମନ୍ତ ପୁରୀ ଶ୍ରୀବିହୀନ ହୋଇଅଛି, କେତେ ସୌଭାଗ୍ୟବାନ୍ ପୁରୁଷ ମଧ୍ୟ ଧନଜନଗୋଧନରୁ ବଞ୍ଚିତ ହୋଇଅଛନ୍ତି ।

ଏହି ମହା ସଙ୍କଟ ସମୟରେ ଅସ୍ମମାନଙ୍କର ପ୍ରଜାବତ୍ସଳ ଗବର୍ଣ୍ଣମେଣ୍ଟ ନିରନ୍ନ ଏବଂ ନିରାଶ୍ରୟ ପ୍ରଜାମାନଙ୍କୁ ଆହାରସଂଗ୍ରହ ଏବଂ ଗୃହନିର୍ମାଣ ନିମିତ୍ତ

ଯଥାସମ୍ଭବ ଆର୍ଥିକ ସାହାଯ୍ୟ ପ୍ରଦାନ କରିଥିଲେ । ଦେଶର ଧନୀ ଏବଂ ଦୟାଳୁ ଲୋକଙ୍କ ଅନୁଗ୍ରହରେ ବସ୍ତ୍ରହୀନ ବସ୍ତ୍ର, ନିରାଶ୍ରୟ ଆଶ୍ରୟ, ନିରନ୍ନ ଅନ୍ନ ଏବଂ ରୁଗ୍ଣ ପଥ୍ୟ ଔଷଧାଦି ଲାଭ କରିବାରୁ କଥଞ୍ଚିତ୍ ପ୍ରାଣରକ୍ଷା କରିବାକୁ ସମର୍ଥ ହୋଇଥିଲେ ।

(୨)

୧୮୯୧ ଖ୍ରୀଷ୍ଟାବ୍ଦରେ ଆଉ ଏକ ମହାଝଟିକା ଏହି ମହୋଦଧି ଗର୍ଭରୁ ଜନ୍ମଲାଭ କରି ଓଡ଼ିଶାର ପୂର୍ବୋପକୂଳ ପ୍ରଦେଶରେ ସର୍ବାପେକ୍ଷା ଭୟଙ୍କର ମୂର୍ତ୍ତି ଧାରଣ କରିଥିଲା । ନଭେମ୍ବର ମାସର ୪ ତାରିଖ କାର୍ତ୍ତିକ ମାସ ଶୁକ୍ଳ ଚତୁର୍ଥୀ ଦିନ ଅପରାହ୍ଣରେ ବହୁଦିନର ଅନାବୃଷ୍ଟି ପରେ ଘୋର ବର୍ଷା ହେବାକୁ ଲାଗିଲା । ସମସ୍ତ ରାତ୍ରି ଅବିରଳଧାରରେ ବର୍ଷିବାରୁ ଚତୁର୍ଦ୍ଦିଗ ବର୍ଷାକାଳ ପ୍ରାୟ ଜଳମୟ ହୋଇଗଲା । ଏଥିପୂର୍ବେ ଲୋକେ ବର୍ଷାଜଳର ଏକାନ୍ତ ଅଭାବ ଦେଖି ହାହାକାର କରୁଥିଲେ । ଭାଦ୍ର ଆଶ୍ୱିନରେ ମଧ୍ୟ ବୈଶାଖ ଜ୍ୟେଷ୍ଠର ପ୍ରଚଣ୍ଡ ଗ୍ରୀଷ୍ମ ଭୋଗ କରି ସନ୍ତାପିତ ହେଉଥିଲେ । ଧାନ୍ୟକ୍ଷେତ୍ରମାନ ବର୍ଦ୍ଧିଷ୍ଣୁବକ୍ଷରେ ଶୁଷ୍କବୃକ୍ଷ ଯେପରି ଶୋଚନୀୟ ଦଶା ଧାରଣ କରିଥିଲା, ତଦ୍ଦର୍ଶନରେ ପ୍ରଜାମାନଙ୍କର ହୃଦୟ ମଧ୍ୟ ଶୁଷ୍କ ହୋଇ ସମଦଶା ଭଜିଥିଲା । ଏକ୍ରାଦିନରେ ଏତେ ବର୍ଷା ହେଲା ଯେ ସେ ବିଶୁଷ୍କ ଭୂମି ଯଥେଷ୍ଟ ଜଳ ଶୋଷଣ କଲାପରେ ମଧ୍ୟ ଗୃହର ପ୍ରାଙ୍ଗଣ ଏବଂ ବହିର୍ଭାଗ ସବୁ ଜଳପୂର୍ଣ୍ଣ ହୋଇଗଲା । ବହୁଦିନପରେ ପ୍ରଚୁର ଜଳବର୍ଷା ଦେଖି ଲୋକେ ଆନନ୍ଦିତ ହେବା ତେଣିକି ଥାଉ ଆଉ, ଏକ ସଙ୍କଟ ଉପସ୍ଥିତ ଦେଖିଲେ । ଦେଖୁଦେଖୁ ରାତ୍ରିର ଶେଷଭାଗରେ ଭୀଷଣ ବାତ୍ୟା ଉପସ୍ଥିତ ହେଲା । ସେ ପ୍ରବାହ ସଙ୍ଗେସଙ୍ଗେ ଶତଶତ ମୃଣ୍ମୟ ଭିତ୍ତି ଜଳସାତ୍ ଏବଂ ଅସଂଖ୍ୟ ବୃକ୍ଷ ଉନ୍ମୂଳିତ ହୋଇ ଭୂମିଶାୟୀ ହେବାକୁ ଲାଗିଲା । ପାର୍ଶ୍ୱସ୍ଥ ବୃକ୍ଷପାତରେ କେତେ ଗୃହଦ୍ୱାର ଭଗ୍ନ, କେତେକେତେ ଗୃହର ଆଚ୍ଛାଦନ ଦୂରରେ ବାୟୁବେଗରେ ପ୍ରକ୍ଷିପ୍ତ ହେଲା । ନାନାପ୍ରାସାଦ ମଧ୍ୟ ବର୍ଦ୍ଧିଷ୍ଣୁ ଏବଂ ସନ୍ଧିଚ୍ୟୁତ ହୋଇ ଭୂମିସାତ୍ ହେଲା । ଲୋକେ ଗୃହକୋଣରେ ଶୀତାର୍ତ୍ତ ଦେହରେ କୁଣ୍ଡ ହୋଇ ଏକସ୍ୱରରେ ବିପଦବାନ୍ଧବ ଈଶ୍ୱରଙ୍କୁ ଡାକିବାକୁ

ଲାଗିଲେ । ସୌଭାଗ୍ୟର ବିଷୟ ଯେ ଝଟିକାର ପ୍ରତାପ ବଢ଼ିବା ସମୟକୁ ରାତ୍ରି ଶେଷ ହୋଇ ଆସିଥିଲା । ଲୋକେ ଆତ୍ମରକ୍ଷାର ବାଟ ପାଇବାରୁ ମୃତ୍ୟୁମୁଖରେ ପତିତ ହୋଇ ନ ଥିଲେ । ସକାଳେ ଦେଖାଗଲା ସମସ୍ତ ଶସ୍ୟକ୍ଷେତ୍ର, ପ୍ରାନ୍ତର ଜଳପ୍ଲାବିତ ଏବଂ ଉତ୍ପାଟିତବୃକ୍ଷଗୁଳ୍ମଲତାପ୍ରପତିତ ଫଳରାଶିରେ ଚତୁର୍ଦ୍ଦିଗ ସମାଚ୍ଛନ୍ନ । ନଦୀମାନ ଅକାଳପ୍ରବଳ ବନ୍ୟାଜଳରେ ଉତ୍ଫୁଲ୍ଲ ହୋଇ ଭୂମି ଉତ୍ପ୍ଲାବନ କରୁଥିଲା । ପୁରୀଠାରେ ତରଙ୍ଗାୟିତ ସମୁଦ୍ରର ଜଳ ବହୁଦୂରକୁ ମାଡ଼ିଆସୁଥିଲା । ପୁରୀର କେତେକ ଘରର କୌଣସି କୌଣସି ପ୍ରକୋଷ୍ଠରେ ଜଳ ପ୍ରବେଶ କରିଥିଲା । ଏହି ମହାଝଟିକା ପ୍ରାୟ ତିନିଘଣ୍ଟାକାଳ ସ୍ଥାୟୀ ହୋଇଥିଲା । ଅପରାହ୍ନରେ ବାୟୁର ଗତି ପରିବର୍ତ୍ତିତ ହେବାରୁ ଲୋକେ ଆପଣା-ଆପଣାର ଅନ୍ନସଂସ୍ଥାନ ଏବଂ ଗୃହରକ୍ଷା ଲାଗି ବାହାରକୁ ଆସି କାର୍ଯ୍ୟରେ ଲାଗିଲେ । ଏ ଝଟିକାରେ ମଧ୍ୟ ଅନେକସ୍ଥ ତାରସ୍ତମ୍ଭ ଉତ୍ପାଟିତ ହୋଇ ତାର ଛିଣ୍ଡିଯାଇଥିବାରୁ ଏ ସଂବାଦ ଯଥାସମୟରେ କେନ୍ଦ୍ରସ୍ଥଳମାନଙ୍କରେ ପ୍ରଚାରିତ ହୋଇ ପାରି ନ ଥିଲା । ପରିମାଣରୁ ଜଣାଯାଇଅଛି ଯେ ସମସ୍ତ ବର୍ଷରେ ଯେତେ ବର୍ଷା ହୋଇଥିଲା, ଏଥିରେ ପ୍ରାୟ ତହିଁର ଏକତୃତୀୟାଂଶ ଜଳ ବର୍ଷିତ ହୋଇଥିଲା ।

---

## କବି ଏବଂ ଜ୍ୟୋତିଷୀର ଚନ୍ଦ୍ର ।

ମୋହର ଚନ୍ଦ୍ରମା ଅମ୍ବରର ମଣି
ଶୀତଳ କିରଣ ଭରା ।
ଢାଳେ କଣି ସୁଧା, ପିଇ ତା ବସୁଧା
ଉଲ୍ଲାସେ କି ମନୋହରା ?
ଚନ୍ଦ୍ରମା ମୋହର ଶୋଭାର ଉପମା
ପ୍ରିୟଜନ ନାରୀ ମୁଖେ,
ସୁପ୍ରଶଣ ମୃଗ— ଲାଞ୍ଛନେ ସୁନ୍ଦର
ହରେ ସନ୍ତାପିତ-ଦୁଃଖେ ।

"ସୂର୍ଯ୍ୟଙ୍କର ଯୋଗେ ଚନ୍ଦ୍ର ପ୍ରକାଶିତ
ତାର ତ ନାହିଁ କିରଣ,
ଶଶ ମୃଗ ଚିହ୍ନେ କୁହେ ମନୋହର
ସେ ଗୌରକଳଙ୍କଭୂଷଣ୍ୟ ।"

---

ଅହା ଶଶାଙ୍କର କ୍ରମେ ଷୋଳକଳା
ଦଶେ କେଡେ ସୁଶୋଭନ !
ଶିବ ଭାଲେ 'ଅର୍ଦ୍ଧ'— ଇନ୍ଦୁ ଶୋଭାପାଏ
ଭକ୍ତ ହୃଦ-ପ୍ରହ୍ଲାଦନ ।

---

"ରବିକର ବଶେ କ୍ରମେ ବଢ଼ ଦଶେ
କଳା ତା ନାହିଁ ବିଶେଷେ,
ଶିବ ଭାଲ୍ ପଟେ କାହୁଁ ବା ଅସିବ
ଭ୍ରମେ ସେ ଅକାଶଦେଶେ ।"

---

ଚନ୍ଦ୍ର ତାରା ପତି, କୁମୁଦନୀ ବନ୍ଧୁ,
ଚନ୍ଦ୍ର ଗ୍ରହଗଣେ ସାର,
ଚନ୍ଦ୍ର ନିଶାକର, ଲକ୍ଷ୍ମୀ ସହୋଦର,
ଚନ୍ଦ୍ର ସର୍ବଶୋଭାଧାର ।

---

"କୁହେ 'ସେ ଚେତନ, ହେବ କା ରମଣ?
ସେ କୁହେ ଗ୍ରହରେ ଗଣା,
ପୃଥିବୀର ଏକ ଉପଗ୍ରହେ ଲେଖା
ଚନ୍ଦ୍ର କେତେ ନାହିଁ ଜଣା ।

ସୂର୍ଯ୍ୟ ଯୋଗୁଁ ଘଟେ ଦିନ ଅବା ରାତ
ଚନ୍ଦ୍ରର କି ଶକ୍ତି ତହିଁ ?
ପ୍ରଭାହୀନ ଜଡ଼— ପିଣ୍ଡଟିଏ ସେହି
'ସେ କି ରମ୍ୟ' ଦେଲ କହି ।"

ସକଳ ନୟନ— ଆହ୍ଲାଦନ ଇନ୍ଦୁ
ଯେବେ ତାକୁ ରାହୁ ଗ୍ରାସେ,
ପୂର୍ବ ଦ୍ୱେଷବଶେ ଅହା ! କି ହରଷେ
ଜଗତ ଅନାଏ ତ୍ରାସେ !

"ରାହୁ ନାହିଁ କେହି ଗ୍ରାସିବ ତାହାକୁ
ସେ ତ ପୃଥିବୀର ଛାୟା,
ଉଠାଲେ ତପନ ରହିଲେ ପଡ଼ନ୍ତ
ପୃଥିବୀର ଗୋଲ କାୟା ।"

## ମୁର୍ଶିଦ୍‌କୁଲୀ ଖାଁ ।

ଦେଶ ମଧ୍ୟରେ ନ୍ୟାୟବର୍ତ୍ତ ଏବଂ ପ୍ରକୃତିରଞ୍ଜନ ନିମିତ୍ତ ଯେଉଁ ନରପତିମାନଙ୍କର ନାମ ଚିରସ୍ମରଣୀୟ ହୋଇଅଛି ସେମାନଙ୍କ ଶ୍ରେଣୀରେ ପ୍ରଜାବତ୍ସଳ ସାଧୁ ମୁର୍ଶିଦ୍‌କୁଲୀଖାଁ ଜଣେ । ତାହାଙ୍କର ଶାସନ ଦକ୍ଷତା, କାର୍ଯ୍ୟକୌଶଳ ଓ ନ୍ୟାୟପରାୟଣତା ଯଶୋଲିପ୍ସୁ ରାଜପୁରୁଷଗଣଙ୍କର ଅନୁକରଣୀୟ ।

ବଙ୍ଗର ବିଖ୍ୟାତ ନବାବ ଜାଫର ମୁର୍ଶିଦ୍ କୁଲୀଖାଁ ଦକ୍ଷିଣାପଥବାସୀ ଜଣେ ଦରିଦ୍ର ବ୍ରାହ୍ମଣର ସନ୍ତାନ । ଶୈଶବରେ ନବବର୍ଷ ବୟସରେ ଇସ୍ପାହାନ୍ ନଗରବାସୀ ହାଜୀସଫି ନାମକ ଜନୈକ ବଣିକ ତାହାଙ୍କୁ କ୍ରୟ କରି ମହମ୍ମଦହାଜୀ ନାମକରଣପୂର୍ବକ ସ୍ୱଦେଶକୁ ଘେନିଗଲେ । ବାଳକଟିକୁ ମେଧାବୀ ଦେଖି ହାଜୀସାହେବ ହୀନ ଦାସକର୍ମରେ ନିୟୋଜିତ ନ କରି ସ୍ନେହପୂର୍ବକ ତାହାଙ୍କୁ

ଲାଳନପାଳନପୂର୍ବକ ଶିକ୍ଷାଦେଲେ । ସେହି ଦୟାଳୁ ପିତୃକଳ୍ପ ବଣିକଙ୍କ ମୃତ୍ୟୁ ଉତ୍ତାରେ କୁଲିଖାଁ ଦେଶର ଦେୱାନଙ୍କ ଅଧୀନସ୍ଥ ରାଜସ୍ୱବିଭାଗରେ ଖଣ୍ଡିଏ ସାମାନ୍ୟ କାର୍ଯ୍ୟ ପାଇଲେ ଏବଂ କାର୍ଯ୍ୟକ୍ଷେତ୍ରରେ ନିଜର ମେଧାବିତା ଓ କାର୍ଯ୍ୟପଟୁତା ଦେଖାଇ ଅଳ୍ପକାଳ ମଧ୍ୟରେ ହାଇଦ୍ରାବାଦର ତତ୍କାଳ-ଶୂନ୍ୟ ଦେୱାନପଦର ସମ୍ପୂର୍ଣ୍ଣ ଉପଯୁକ୍ତ ବୋଲି ଦିଲ୍ଲୀସମ୍ରାଟ୍ ଔରଙ୍ଗଜେବଙ୍କ ଦରବାରରେ ବିବେଚିତ ହେଲେ । ସମ୍ରାଟ୍ ତାହାଙ୍କୁ କାରତଲବ୍ ଖାଁ ଉପାଧି ସହିତ ମନ୍‌ସବୀ ଅର୍ଥାତ୍ ସୈନ୍ୟାଧ୍ୟକ୍ଷତା ପ୍ରଦାନପୂର୍ବକ ଦେୱାନପଦକୁ ଉନ୍ନୀତ କଲେ । ଏହି ଦାୟିତ୍ୱପୂର୍ଣ୍ଣ ଉଚ୍ଚପଦ ଲାଭ କରି ମଧ୍ୟ କୁଲି ଖାଁ ନିଜ ଦକ୍ଷତା



ମୁର୍ଶିଦକୁଲି ଖାଁ ।

ଗୁଣରେ ରାଜପକ୍ଷର ଲାଭ ଦେଖାଇ ଅଚିରେ ସମ୍ରାଟ୍ ଔରଙ୍ଗଜେବଙ୍କ ସୁଦୃଷ୍ଟିରେ ପଡ଼ିଲେ ଏବଂ ତାହାର ଫଳରେ ୧୭୦୧ ଖ୍ରୀଷ୍ଟାବ୍ଦରେ ବଙ୍ଗଳାର ଦେୱାନୀପଦ ପ୍ରାପ୍ତ ହେଲେ । ଏହି କାର୍ଯ୍ୟରେ ନିଯୁକ୍ତ ହେବା ଉତ୍ତାରେ ସେ କତିପୟ ଅନୁଚର ସହିତ ଦାକ୍ଷିଣାତ୍ୟରୁ ଆସି ପ୍ରଥମେ ଢାକା ନଗରରେ ପଦାର୍ପଣ କଲେ । ଏଥିପୂର୍ବେ ସେଠାରେ ନାନା ବିପ୍ଲବ ଓ ବିଶୃଙ୍ଖଳା ଯୋଗୁଁ

ରାଜକୋଷ ଅତି ହୀନ ଅବସ୍ଥାରେ ପଡିଥିଲା । ସୁବିଧା ଥାଇ ମଧ୍ୟ ଉପଯୁକ୍ତ ଅର୍ଥାଗମ ହେଉ ନ ଥିଲା, ବରଂ ଅନ୍ୟାୟରେ ଅର୍ଥର ଯଥେଷ୍ଟ ଅପବ୍ୟୟ ହେଉଥିଲା । ମୁର୍ଶିଦକୁଲୀ ଖାଁ ଢାକାରେ ପଦାର୍ପଣ କଲାକ୍ଷଣି ବଙ୍ଗୀୟ ରାଜସ୍ୱ-ବିଭାଗର ବନ୍ଦୋବସ୍ତରେ ସମଧିକ ଯତ୍ନବାନ୍ ହେଲେ ଏବଂ ତାହାଙ୍କ ଚେଷ୍ଟାରେ ଅଳ୍ପକାଳ ମଧ୍ୟରେ ବଙ୍ଗଳା ରାଜସ୍ୱର ପ୍ରଚୁର ଉନ୍ନତି ସାଧିତ ହୋଇଥିଲା । ଅଧୀନସ୍ଥ କର୍ମଚାରୀମାନଙ୍କ କାର୍ଯ୍ୟ ପ୍ରତି ତୀକ୍ଷ୍ଣଦୃଷ୍ଟି ରଖିବାରୁ କ୍ରମଶଃ ସେମାନେ କର୍ମଣ୍ୟ ହେବାକୁ ଲାଗିଲେ ଏବଂ ସେମାନଙ୍କ ସାହାଯ୍ୟରେ ବିଚକ୍ଷଣ ଦେଵାନ ଦେଶର ସର୍ବବିଧ ଭୂମିର ଉତ୍ପାଦିକା ଶକ୍ତି ଓ ତଦନୁପାତରେ ରାଜକରର ତାରତମ୍ୟ ଏବଂ ବାଣିଜ୍ୟାଦିର ଶୁଳ୍କ ପ୍ରତି ଉତ୍ତମରୂପେ ଦୃଷ୍ଟି ପକାଇ ସେ ବିଷୟର ଗୋଟିଏ ବିସ୍ତାରିତ ବିବରଣ ପ୍ରସ୍ତୁତ କଲେ । ଏହି ରାଜସ୍ୱ ବନ୍ଦୋବସ୍ତ ମୁର୍ଶିଦ୍‌କୁଲୀଙ୍କର ଗୋଟିଏ କୀର୍ତ୍ତିସ୍ତମ୍ଭ । ବଙ୍ଗଳାର ସେ ଯେଉଁ ଜମିଦାରୀ ବନ୍ଦୋବସ୍ତର କାଗଜ ପ୍ରସ୍ତୁତ କରିଥିଲେ ତାହାହିଁ ପରବର୍ତ୍ତୀ ବନ୍ଦୋବସ୍ତମାନଙ୍କର ମୂଳଭିତ୍ତି ।

ମୁର୍ଶିଦ୍‌କୁଲୀଙ୍କର ରାଜ୍ୟଶାସନନୀତି ପ୍ରଶଂସନୀୟ ଥିଲା । ସେ ବିଚାରାସନରେ ଉପବେଶନ କରି ଅମାତ୍ୟଙ୍କୁ ସର୍ବଦା ନ୍ୟାୟ-ମାର୍ଗରେ ଚାଳିତ କରୁଥିଲେ । କୌଣସି ସ୍ୱାର୍ଥ ବା ପ୍ରଲୋଭନରେ ସେ କଦାପି ନ୍ୟାୟରୁ ବିଚ୍ୟୁତ ହେଉ ନ ଥିଲେ । ଏ ନ୍ୟାୟନିଷ୍ଠାଦି ଗୁଣରେ ସେ ତାଙ୍କର ଏକମାତ୍ର ପୁତ୍ରର ଅତ୍ୟାଚାରିତାର ପ୍ରମାଣ ପାଇ ପ୍ରାଣଦଣ୍ଡଆଜ୍ଞା ପ୍ରଦାନ କରିଥିଲେ । କେବଳ ତେତିକ ନୁହେଁ, ସେହି ଆଜ୍ଞା କପରି କାର୍ଯ୍ୟରେ ପରିଣତ ହେବ ତାହାର ସମୁଚିତ ବ୍ୟବସ୍ଥା କରିଥିଲେ । ରାଜ୍ୟ ମଧ୍ୟରୁ ଚୌର୍ଯ୍ୟାଦି ଉପଦ୍ରବ ଦୂର କରିବା ଅଭିପ୍ରାୟରେ ସେ ସ୍ୱରାଜ୍ୟ ମଧ୍ୟରେ ଅନେକ ଥାନା ବସାଇଥିଲେ । ଥାନାପତିମାନଙ୍କର କଠୋର ଶାସ୍ତି ପ୍ରଦାନରେ ରାଜ୍ୟରୁ ଦସ୍ୟୁଭୟ ବହୁପରିମାଣରେ ଦୂର ହୋଇଯାଇଥିଲା । ଯେଉଁ ରାଜମାର୍ଗରେ ଦଳେ ଦଳେ ଦସ୍ୟୁ ପଥିକମାନଙ୍କର ଧନ ପ୍ରାଣ ହରଣ କରୁଥିଲେ ସେଥିରେ ଯାତ୍ରୀମାନେ ନିର୍ଭୀକ ମନରେ ନିଦ୍ରାସୁଖ ଅନୁଭବ କରୁଥିଲେ । ଦୁର୍ବଳମାନଙ୍କ ପ୍ରତି ବଳବାନ୍‌ମାନଙ୍କର

ନିୟମ ଏତେ ସୁଦୃଢ ଥିଲା ଯେ 'ବାଘ ବକରୀ' ଏକ ଘାଟରେ ପାଣି ପିଉଥିଲେ । ରାଜକର୍ମଚାରୀଗଣ ବଡ଼ଲୋକମାନଙ୍କ ଅପରାଧ ସ୍ଥଳରେ ଚକ୍ଷୁଲଜ୍ଜାବଶତଃ ପକ୍ଷପାତପୂର୍ବକ ଅନ୍ୟାୟ ଅବଲମ୍ବନ କଲେ କୁଲ୍ଲୀଖାଁ ବ୍ୟବହାରାର୍ଥୀ ବା ବାଦୀର ଆବେଦନ ପାଇଲାକ୍ଷଣି ଉକ୍ତ ବିଚାରର ସ୍ୱହସ୍ତରେ ଗ୍ରହଣ କରୁଥିଲେ । ଉଚ୍ଚବଂଶଜ, ବିଦ୍ୱାନ୍ ଏବଂ ସୁଚରିତ୍ର ବ୍ୟକ୍ତି ବ୍ୟତୀତ ଅନ୍ୟ କେହି ତାହାଙ୍କ ସମୟରେ କାଜୀ ବା ବିଚାରକର କାର୍ଯ୍ୟ ପ୍ରାପ୍ତ ହେଉ ନ ଥିଲେ । ଦେଶରେ କିପରି ପ୍ରଚୁର ଶସ୍ୟ ସଂଗୃହୀତ ହୋଇ ରହିବ ଏବଂ ବଜାରର ଭାଉ ସର୍ବଦା ଠିକ୍ ରହିବ ସେଥିପ୍ରତି ସେ ତୀକ୍ଷ୍ଣଦୃଷ୍ଟି ରଖିଥିଲେ । କେହି ବ୍ୟବସାୟୀ ଅଧିକ ଲାଭ ଆଶାରେ ଚଳିତ ଭାଉ ଉପରେ ଅଧିକା ଦର କଲେ ତାହାକୁ ଗର୍ଦ୍ଦଭ ପୃଷ୍ଠରେ ନଗର ପ୍ରଦକ୍ଷିଣ କରିବାକୁ ଦଣ୍ଡାଜ୍ଞା ହେଉଥିଲା । ତାଙ୍କର ଏହିସବୁ ଗୁଣ ଦେଖି ଲୋକେ ତାହାଙ୍କୁ ପୀର ବା ସାଧୁ ଆଖ୍ୟା ପ୍ରଦାନ କରୁଥିଲେ ।

କୁଲ୍ଲୀ ଖାଁ ନିଜେ ଯେପରି ସୁବିବେଚକ ଓ ସୁପଣ୍ଡିତ ଥିଲେ, ତାଦୃଶ ଲୋକଙ୍କୁ ମଧ୍ୟ ସେହିପରି ସମାଦର କରୁଥିଲେ । ତାହାଙ୍କର ହସ୍ତାକ୍ଷର ଅତି ସୁନ୍ଦର ଏବଂ ଲିଖନପଟୁତା ଯଥେଷ୍ଟ ଥିଲା । ଗଣିତଶାସ୍ତ୍ରରେ ପ୍ରବୀଣ ଥିବାରୁ ସର୍ବପ୍ରକାର ହିସାବପତ୍ର ସେ କ୍ଷଣକରେ ପ୍ରଣିଧାନ କରି ପାରୁଥିଲେ, ସେଥିରେ ତାହାଙ୍କୁ ଛଳେ ପ୍ରତାରିତ କରିବାକୁ କାହାରି ସାହସ ନ ଥିଲା । ପ୍ରତି ମାସର ଶେଷ ଦିବସରେ ସମସ୍ତ ସେରସ୍ତାର କାଗଜପତ୍ର ନିଜେ ପର୍ଯ୍ୟବେକ୍ଷଣ କରୁଥିଲେ । ଏପ୍ରକାର ଅଧ୍ୟବସାୟ ଓ ବିଧିପାଳନ ଦ୍ୱାରା ତାହାଙ୍କ ସମୟରେ ରାଜକାର୍ଯ୍ୟର ପ୍ରତ୍ୟେକ ବିଭାଗରେ ଏକ ଅପୂର୍ବ ଶୃଙ୍ଖଳା ପ୍ରବର୍ତ୍ତିତ ହୋଇଥିଲା । ବିଚାରବିଭାଗର ସେ ଯଥେଷ୍ଟ ସଂସ୍କାର ବିଧାନ କରିଥିଲେ । ପୁରାତନ ନବାବୀ ବିଚାରପ୍ରଣାଳୀର ଆମୂଳ ସଂଶୋଧନ କରି କୁଲ୍ଲୀ ଖାଁ ଦୁଇଟି ବିଚାରବିଭାଗ ସ୍ଥାପନ କରିଥିଲେ । ଯୋଗ୍ୟବ୍ୟକ୍ତିମାନେ ଜାତିଧର୍ମନିର୍ବିଶେଷରେ ତାହାଙ୍କ ଦ୍ୱାରା ଉଚ୍ଚପଦରେ ନିଯୁକ୍ତ ହେଉଥିଲେ ଏବଂ ଗୁଣାନୁରୂପ ବକ୍ସୀ, କାନୁନଗୋ, ମଜୁମଦାର, ମୁସ୍ତୋଫି ପ୍ରଭୃତି ଉପାଧି ଦ୍ୱାରା ଉତ୍ସାହପ୍ରାପ୍ତ ହେଉଥିଲେ ।

ବର୍ଣ୍ଣିତ ସମୟରେ ଦେୱାନୀ ସମ୍ବନ୍ଧୀୟ ବିଚାର ହିନ୍ଦୁସଂହିତା ଓ କୋରାଣ ବିଧି ଅନୁସାରେ ହେଉଥିଲେହେଁ ଫୌଜଦାରୀ ବିଚାର ବା ଦଣ୍ଡବିଧାନ ମୁସଲମାନ ଆଇନ ଅନୁସାରେ ହେଉଥିଲା । ତେଣୁ ଅତି ଭୀଷଣଭାବରେ ପ୍ରାଣଦଣ୍ଡାଦିର ଆଦେଶ ପ୍ରଚଳିତ ଥିଲା । ଚୋରି ପ୍ରଭୃତି ଅପରାଧରେ ମଧ୍ୟ ଅଙ୍ଗହାନିର ଦଣ୍ଡ ପ୍ରଚଳିତ ଥିଲା । କୋମ୍ପାନୀଙ୍କ ଅଧିକାରରେ ମୁସଲମାନ ଆଇନର କଠିନ ଦଣ୍ଡ କ୍ରମଶଃ ସଂଶୋଧିତ ହୋଇ ଲଘୁତର ହୋଇଆସିଲା ଏବଂ ୧୭୯୧ ଖ୍ରୀଷ୍ଟାବ୍ଦରେ ଏହି ଅଙ୍ଗହାନି ବା ଯନ୍ତ୍ରଣାଦାନ ପରିବର୍ତ୍ତରେ କାରାବାସଦଣ୍ଡ ପ୍ରଥମ ପ୍ରବର୍ତ୍ତିତ ହେଲା । ୧୮୩୨ ଖ୍ରୀଷ୍ଟାବ୍ଦରେ ଇଂରାଜ ଗବର୍ଣ୍ଣମେଣ୍ଟ ଏହି ମର୍ମରେ ଘୋଷଣା ପ୍ରଚାର କରିଥିଲେ ଯେ, ମୁସଲମାନ ଭିନ୍ନ ଅନ୍ୟ ଅପରାଧୀକୁ ମହମ୍ମଦୀୟ ଆଇନ ଅନୁସାରେ ଦଣ୍ଡ ପ୍ରଦତ୍ତ ହେବ ନାହିଁ । କ୍ରମେ ଏହା ପରିବର୍ତ୍ତିତ ହୋଇ ବର୍ତ୍ତମାନ ସାଧାରଣ ବିଧିରେ ଉପନୀତ ହୋଇଅଛି ।

ମୁର୍ଶିଦ୍‌କୁଲି ଯେପରି ଜଣେ ଅନଳସ ଓ କର୍ମନିଷ୍ଠ ରାଜପୁରୁଷ, ସେହିପରି ସେ ଜଣେ ଅନୁଷ୍ଠାନପର ଧାର୍ମିକ ମୁସଲମାନ ବୋଲି ପରିଚିତ । ସେ ପ୍ରତିଦିନ ନିର୍ଦ୍ଦିଷ୍ଟ ସମୟରେ ଧର୍ମମନ୍ଦିରରେ ଉପସ୍ଥିତ ହୋଇ ଉପାସନା କରୁଥିଲେ । ଧର୍ମର ଉନ୍ନତି ନିମିତ୍ତ ନାନାସ୍ଥାନରେ ଅର୍ଥସାହାଯ୍ୟ କରୁଥିଲେ । ଦରିଦ୍ରଭୋଜନ ପ୍ରତି ତାଙ୍କର ସର୍ବଦା ସୁଦୃଷ୍ଟି ଥିଲା । ରବିଉଏଲ ମାସର ପ୍ରଥମ ଦ୍ୱାଦଶ ଦିବସରେ ସେ ଅଗ୍ରଣୀ ସମସ୍ତ ଲୋକଙ୍କୁ ପାନଭୋଜନ ଦ୍ୱାରା ପରିତୃପ୍ତ କରାଉଥିଲେ ଏବଂ ନିଜେ ଭୋଜନସ୍ଥାନରେ କୃତାଞ୍ଜଳିପୁଟରେ ଉପସ୍ଥିତ ଥାଇ ସେମାନଙ୍କର ପରିଚର୍ଯ୍ୟା କରୁଥିଲେ । ଅତିଥିସେବାରେ ମଧ୍ୟ କୁଲି ଖାଁ ନିପୁଣ ଥିଲେ । ପ୍ରତ୍ୟହ ଶତଶତ ଅନାଥ ଫକୀର ରାଜପ୍ରାସାଦ ନିକଟରେ ତୃପ୍ତିପୂର୍ବକ ଭୋଜନ କରି ପ୍ରତିନିବୃତ୍ତ ହେଉଥିଲେ । ଗୋମହିଷାଦି ପଶୁମାନେ ମଧ୍ୟ ତାହାଙ୍କ ଦୟାରୁ ବଞ୍ଚିତ ନ ଥିଲେ । ମଧ୍ୟମଧ୍ୟରେ ତାଙ୍କର ଭୃତ୍ୟମାନେ କ୍ଷେତ୍ରାଦିରେ ବୁଲି ସେମାନଙ୍କୁ ଖାଦ୍ୟ ଦେଇଆସୁଥିଲେ । ମୃଗୟାଦି ହିଂସାପର କର୍ମରେ ତାଙ୍କର ଆଦୌ ପ୍ରବୃତ୍ତି ନ ଥିଲା । ସ୍ଥୂଳରେ କହିବାକୁ ଗଲେ ସେ କୌଣସି ପ୍ରକାର ବ୍ୟସନରେ ଲିପ୍ତ ନ ଥିଲେ । ପାନଭୋଜନ ଏବଂ ପରିଚ୍ଛଦାଦି ବିଷୟରେ

ସେ ବଡ଼ ମିତାଶ୍ରୟୀ ଥିଲେ । ସ୍ତ୍ରୀମାନଙ୍କ ସହିତ ବ୍ୟବହାରରେ ସେ ଏତେ ସଙ୍କୁଚିତ ଥିଲେ ଯେ, କୌଣସି ଅପରିଚିତା ରମଣୀ ତାହାଙ୍କ ଅନ୍ତଃପୁରରେ ପ୍ରବେଶ କରି ପାରୁ ନ ଥିଲେ ।

ଦେଶହିତକର ଅନୁଷ୍ଠାନ ପ୍ରତି ତାଙ୍କର ବିଶେଷ ଦୃଷ୍ଟି ଥିବାରୁ ତାହାଙ୍କ ରାଜତ୍ୱକାଳ ମଧ୍ୟରେ କେତେ ହର୍ମ୍ମ୍ୟ ଏବଂ ଧର୍ମମନ୍ଦିରମାନ ନିର୍ମିତ ହୋଇଥିଲା । ତନ୍ମଧ୍ୟରେ କାଟୋରାର ମସ୍‌ଜିଦ୍ ତାଙ୍କର ପ୍ରଧାନ କୀର୍ତ୍ତି । ଏହା ମକ୍କାର ସୁପ୍ରସିଦ୍ଧ ମସ୍‌ଜିଦ୍ ଅନୁକରଣରେ ୧୭୨୩ ଖ୍ରୀଷ୍ଟାବ୍ଦରେ ନିର୍ମିତ ହୋଇଥିଲା । ତାହାର ପ୍ରବେଶଦ୍ୱାର ତଳେ ମୁର୍ଶିଦ୍ କୁଲି ଖାଁଙ୍କ ସମାଧିମନ୍ଦିର ସ୍ଥାପିତ । ଏଠାରେ ସିଂହଦ୍ୱାରସମନ୍ୱିତ ଗୋଟିଏ ପ୍ରଶସ୍ତ ଦ୍ୱିତଳଗୃହ ଏବଂ ତାହାର ମଧ୍ୟସ୍ଥଳରେ ପଞ୍ଚଶୀର୍ଷ ମସ୍‌ଜିଦ୍ ବିରାଜମାନ । ସମସ୍ତ ସ୍ଥାନର ଚତୁଃପାର୍ଶ୍ୱରେ ବିଦ୍ୟାର୍ଥୀମାନଙ୍କ ଅବାସ ନିମିତ୍ତ ମନ୍ଦିରାକୃତି ଅନେକ କ୍ଷୁଦ୍ର ଦ୍ୱିତଳଗୃହ ଅଛି । ଏହି ମସ୍‌ଜିଦଟି ନାନା କାରୁକାର୍ଯ୍ୟରେ ଭୂଷିତ ହୋଇ ତଦାନୀନ୍ତନ ଶିଳ୍ପଗୌରବର ପରିଚୟ ପ୍ରଦାନ କରୁଅଛି ।

---

## ମଧୁକର ।

ନାନାହର୍ମ୍ମ୍ୟ ନିର୍ମି ମଧୁଚକ୍ରପୁରେ
ପାଳନ୍ତି ପ୍ରଜାଙ୍କୁ ମଧୁପେ ମଧୁରେ ।
ଅବିରାମ କର୍ମେ ଦଅନ୍ତି ଜୀବନ
ଅଳସପଣକୁ ମଣନ୍ତି ମରଣ ।
ପୁଷ୍ପେ ପୁଷ୍ପେ ଭ୍ରମି ଘେନି ପୁଷ୍ପରସ
ରଚନ୍ତି କୌଶଳେ ମଧୁଦ୍ରବ୍ୟରସ ।
ନ ଥାଏଟି ଲକ୍ଷ୍ୟ ନିଜ ଭକ୍ଷ୍ୟ ପ୍ରତି
ସଞ୍ଚନ୍ତି ଅମୃତ ଅମୃତ୍ୟାଗ-ବ୍ରତୀ ।

ସୁଧା ଅଟଣେ ଯାଇ ନର ଦୁର୍ଗର
କରିଦେବ ତାର ରାଜ୍ୟ ଛାରଖାର ।



ମଧୁକର ।

ଧିକ ହେ ମାନବ, ତବ ଦୃପ୍ତପଣ
ସବୁ ହଉ ପୁଣି ଭଣ ହେ କୃପଣ?
ମଧୁକର ବୃତ୍ତି ଅଟଇଲେ ହେବେ
ଦୁଃଖ ଦାରିଦ୍ର୍ୟ କି ପରଶିବାଇବେ?

---

## ବୈରାମଜୀ ମାଲବାରୀ ।

ଦରିଦ୍ର ଲୋକ ପରିଶ୍ରମ, ଧୈର୍ଯ୍ୟ ଏବଂ ଅଧ୍ୟବସାୟ ଦ୍ୱାରା ସକଳପ୍ରକାର ବାଧାବିଘ୍ନ ଦୂରୀକରଣପୂର୍ବକ ଶିକ୍ଷାଲାଭ କରି କିପରି ବିଦ୍ୱାନ, ଧନବାନ୍ ଓ ବିଖ୍ୟାତ ହୋଇପାରେ ତାହା ବୈରାମଜୀ ମାଲବାରୀଙ୍କ ଜୀବନବୃତ୍ତାନ୍ତ ପାଠ କଲେ ଉତ୍ତମରୂପେ ଉପଲବ୍ଧ ହେବ ।

୧୮୫୩ ଖ୍ରୀଷ୍ଟାବ୍ଦରେ ବୈରାମଜୀ ମାଲବାରୀ ଗୁର୍ଜ୍ଜରଦେଶର ଗୋଟିଏ ଦରିଦ୍ରବଂଶରେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କର ପିତା ବରୋଦାରାଜ୍ୟରେ ମାସିକ କୋଡିଏଟଙ୍କା ବେତନରେ ଜଣେ ସାମାନ୍ୟ କିରାଣୀ ଥିଲେ । ବୈରାମଜୀ ଛଅବର୍ଷ ବୟଃକ୍ରମକାଳରେ ପିତୃଶୂନ୍ୟ ହୋଇଥିଲେ । ସୁତରାଂ ତାହାଙ୍କ ଶିକ୍ଷାର ବ୍ୟୟଭାରବହନ ତାହାଙ୍କ ମାତାଙ୍କ ପକ୍ଷରେ କଷ୍ଟକର ହୋଇପଡ଼ିଲା । ତେଣୁ ବୈରାମଜୀ ସୁରାଟର ଜଣେ ବୃଦ୍ଧ ପାର୍ଶୀଶିକ୍ଷକଙ୍କ ବିଦ୍ୟାଳୟକୁ ପ୍ରେରିତ



ବୈରାମଜି ମାଲବାରି ।

ହେଲେ । ସେଠାରେ ଅଉ ଦୁଇଶତ ଦରିଦ୍ର ବାଳକ ଅଧ୍ୟୟନ କରୁଥିଲେ । ଛାତ୍ରମାନେ ବେତନ ପ୍ରଦାନରେ ଅସମର୍ଥ ଥିବାରୁ ତତ୍ପରିବର୍ତ୍ତରେ ଶିକ୍ଷକଙ୍କ ନିମିତ୍ତ ସୂତାକାଟି ଏବଂ ତାଙ୍କର ଅନ୍ୟାନ୍ୟ କାର୍ଯ୍ୟ କରି ବିଦ୍ୟାଳୟର ବେତନ ପରିଶୋଧ କରୁଥିଲେ ।

ବୈରାମଜି ଏହି ବିଦ୍ୟାଳୟରେ ଦୁଇବର୍ଷ ଅଧ୍ୟୟନ କରି ତାଙ୍କର ମାତୃଭାଷା ଅଧ୍ୟୟନ କରିବା ନିମିତ୍ତ ଅନ୍ୟ ଏକ ବିଦ୍ୟାଳୟକୁ ପ୍ରେରିତ ହେଲେ । ଏହି ବିଦ୍ୟାଳୟରେ ଜଣେ ବ୍ରାହ୍ମଣଶିକ୍ଷକ ଥିଲେ । ସେ ମଧ୍ୟ ବେତନ ଗ୍ରହଣ କରୁ ନ ଥିଲେ । ବେତନ ପରିବର୍ତ୍ତରେ କେହି କେହି ଚାଉଳ, ଡାଲି, ଫୁଲ, ଫଳ ପ୍ରଭୃତି ପ୍ରଦାନ କରୁଥିଲେ । କିନ୍ତୁ ଯେଉଁମାନେ ଅତ୍ୟନ୍ତ ଦରିଦ୍ର ଏବଂ ଏହିସବୁ ପଦାର୍ଥ ପ୍ରଦାନ କରିବାକୁ ମଧ୍ୟ ଅସମର୍ଥ ସେମାନେ

ତହିଁପରିବର୍ତ୍ତରେ ରନ୍ଧନ, ଜଳଆହରଣ, କାଷ୍ଠକର୍ତ୍ତନ, ଗୃହପରିଷ୍କରଣ ପ୍ରଭୃତି ନାନାକାର୍ଯ୍ୟ କରୁଥିଲେ । ଏହି ବିଦ୍ୟାଳୟରେ ଶିକ୍ଷକ ଏବଂ ଛାତ୍ରମାନଙ୍କ ଉପବେଶନ ନିମନ୍ତେ କୌଣସି ପ୍ରକାର କାଷ୍ଠାସନ ନ ଥିଲା । ସେମାନେ ଗୃହତଳରେ ବସି ଖଣ୍ଡିଏ ଖଣ୍ଡିଏ ସାନ କାଷ୍ଠଫଳକ ବାଲୁକା ଦ୍ୱାରା ଅଚ୍ଛାଦିତ କରି କ୍ଷୁଦ୍ର ଯଷ୍ଟି ସାହାଯ୍ୟରେ ତହିଁରେ ଅକ୍ଷର ଏବଂ ଅଙ୍କ ଲେଖି ଶିକ୍ଷା କରୁଥିଲେ ।

ଅଷ୍ଟବର୍ଷ ବୟଃକ୍ରମ କାଳରେ ସେ ସୁରଟର ଅନ୍ୟ ଏକ ବିଦ୍ୟାଳୟକୁ ପ୍ରେରିତ ହେଲେ । ଏହି ବିଦ୍ୟାଳୟର ଶିକ୍ଷକ ଅତ୍ୟନ୍ତ କଠୋରପ୍ରକୃତିକ ଏବଂ ନିର୍ଦ୍ଦୟ ଥିଲେ । ଅଳ୍ପବୟସ୍କ ବୈରାମଜି ବିଦ୍ୟାଳୟର ପାଠ ଯେତେ ଉତ୍ତମରୂପେ ଶିକ୍ଷା କଲେ ମଧ୍ୟ ନିଷ୍ଠୁର ଶିକ୍ଷକଙ୍କୁ ସନ୍ତୁଷ୍ଟ କରିବା ତାଙ୍କପକ୍ଷରେ ଅସମ୍ଭବ ହୋଇପଡୁଥିଲା । ସେ ପ୍ରତ୍ୟହ ବିଦ୍ୟାଳୟରୁ ପ୍ରତ୍ୟାଗମନ କରି ମାତାଙ୍କ ଅଗରେ କାନ୍ଦିକାନ୍ଦି ବିଦ୍ୟାଳୟର ଘଟନା ବିବୃତ କରୁଥିଲେ । ମାତା ପୁତ୍ରର କଥା ଶୁଣି ପୁତ୍ରକୁ କୋଳରେ ଧରି ଅଧ୍ୟବସାୟ ସହକାରେ ଅଧ୍ୟୟନ କରିବାକୁ ସମୁତ୍ସାହିତ କରୁଥିଲେ ଏବଂ ତାହା ସଙ୍ଗେସଙ୍ଗେ ଈଶ୍ୱରଭକ୍ତ ଓ ସତ୍ୟବାଦୀ ହେବାକୁ ମଧ୍ୟ ଶିକ୍ଷା ଦେଉଥିଲେ ।

ଉକ୍ତ ଶିକ୍ଷକ ଅତ୍ୟନ୍ତ ନିର୍ଦ୍ଦୟପ୍ରକୃତିକ ଲୋକ ଥିଲେ ସତ୍ୟ, କିନ୍ତୁ ପାର୍ଶୀଭାଷାରେ ବିଶେଷ ନିପୁଣ ଥିଲେ । ସେହି ଶିକ୍ଷକଙ୍କଠାରୁ ବୈରାମଜି ପାର୍ଶୀଭାଷା ଉତ୍ତମରୂପେ ଶିକ୍ଷା କରି ଉକ୍ତ ଭାଷାରେ ଲିଖିତ ନାନା ପ୍ରାଚୀନ ପୁସ୍ତକ ଅଧ୍ୟୟନପୂର୍ବକ ଉକ୍ତ ଗ୍ରନ୍ଥବର୍ଣ୍ଣିତ ରାଜା ଏବଂ ବୀରପୁରୁଷମାନଙ୍କ ଜୀବନବୃତ୍ତାନ୍ତ ପାଠକରି ନିଜକୁ ସେମାନଙ୍କ ମଧ୍ୟରୁ ଜଣେ ବୋଲି କଳ୍ପନା କରୁଥିଲେ ।

ଦ୍ୱାଦଶବର୍ଷ ବୟଃକ୍ରମ କାଳରେ ବୈରାମଜିଙ୍କ ମାତା ମୃତ୍ୟୁମୁଖରେ ପତିତ ହେବାରୁ ସେ ସଂସାରକ୍ଷେତ୍ରରେ ପ୍ରବେଶ କରିବାକୁ ବାଧ୍ୟ ହୋଇ ଜୀବିକା ଉପାର୍ଜ୍ଜନର ଉପାୟ ଅନ୍ୱେଷଣ କରିବାକୁ ଲାଗିଲେ । ପ୍ରଥମେ କେତେକ ବାଳକଙ୍କୁ ଶିକ୍ଷା ପ୍ରଦାନ କରି କିଞ୍ଚିତ ଅର୍ଥ ଉପାର୍ଜ୍ଜନ କଲେ । ତହିଁରେ ଜଣେ ଦୟାଳୁ ଧର୍ମ୍ମପ୍ରବୃତ୍ତିକ ବୈରାମଜିଙ୍କ ଅତିଶୟ ଦରିଦ୍ର ଜାଣି ସୁରଟର ମିଶନାରୀ

ବିଦ୍ୟାଳୟରେ ଅବୈତନିକ ଛାତ୍ରରୂପେ ଗ୍ରହଣ କଲେ । ସେଠାରେ ଏହି ଦ୍ୱାଦଶବର୍ଷବୟସ୍କ ବାଳକ ପୂର୍ବାହ୍ଣରେ ଦୁଇଘଣ୍ଟା ଏବଂ ସନ୍ଧ୍ୟାପରେ ଦୁଇଘଣ୍ଟା ଆପଣା ଛାତ୍ରମାନଙ୍କୁ ଉପଦେଶ ଦେଇ ଦିନର ଅବଶିଷ୍ଟ ସମୟ ଅଧ୍ୟୟନରେ ଅତିବାହିତ କରୁଥିଲେ । କାର୍ଯ୍ୟକାଳର ସାମାନ୍ୟ ଅବକାଶ ମଧ୍ୟରେ ଚିତ୍ତବିନୋଦ କାର୍ଯ୍ୟ କରୁଥିଲେ । ସେ ଅଧିକ ରାତ୍ରି ପର୍ଯ୍ୟନ୍ତ ଜାଗ୍ରତ ରହି କଠିନ ପରିଶ୍ରମପୂର୍ବକ ଅଧ୍ୟୟନ କରୁଥିଲେ । ମିଶନ ବିଦ୍ୟାଳୟରେ ଶିକ୍ଷା ଶେଷ କରି ସେ ପଞ୍ଚଦଶବର୍ଷ ବୟଃକ୍ରମକାଳରେ ବୋମ୍ବାଇ ନଗରୀକୁ ଯାଇ କଲେଜରେ ଅଧ୍ୟୟନ କରିବାର ମନଃସ୍ଥ କଲେ । ବେିରାମଜି ତାଙ୍କ ସାମାନ୍ୟ ଉପାର୍ଜ୍ଜନରୁ କିଞ୍ଚିତ୍ ଅର୍ଥ ଉଦ୍‌ବୃତ୍ତ କରିଥିଲେ ସତ୍ୟ, କିନ୍ତୁ ତାହା କଲେଜ ଶିକ୍ଷା ନିମିତ୍ତ ଯଥେଷ୍ଟ ନ ଥିଲା । ଜଣେ ଦୟାଳୁ ଧର୍ମପ୍ରଚାରକ ଏହା ଅବଗତ ହୋଇ ବେିରାମଜିଙ୍କୁ କହିଥିଲେ ଆବଶ୍ୟକ ହେଲେ ସେ ଅର୍ଥସାହାଯ୍ୟ କରିବେ । ଅଭି ମଧ୍ୟ ଏହାଙ୍କର ବିଦ୍ୟାଶିକ୍ଷା କରିବାରେ ବଳବତୀ ଇଚ୍ଛା ଥିବାର ଜାଣି ଜଣେ କୃପଣ ମହାଜନ ଅଯାଚିତଭାବରେ ବେିରାମଜିଙ୍କ ହସ୍ତରେ କିଛି ଟଙ୍କା ପ୍ରଦାନ କରି କହିଥିଲେ "ବତ୍ସ ! ଅଧ୍ୟୟନାର୍ଥ ବମ୍ବେଇ ନଗରୀକୁ ଗମନାର୍ଥ ଅଭିଳାଷ କରିଅଛ । ଯାଅ, ଦୁଃଖିତ ହୁଅ ନାହିଁ; ଏହା ଋଣସ୍ୱରୂପ ଗ୍ରହଣ କର । ତୁମର ସରଳଭାବପୂର୍ଣ୍ଣ ମୁଖମଣ୍ଡଳହିଁ ମୋ ଏ ମୁଦ୍ରାର ପ୍ରତିଭୂ ।" ଏହା ଅତ୍ୟୁକ୍ତି ନୁହେ ଯେ, ସମୟରେ ସେ ସମସ୍ତ ମୁଦ୍ରା ପରିଶୋଧ କରିପାରିଥିଲା ।

କଲେଜରେ ଅଧ୍ୟୟନ କରୁଥିବା ସମୟରେ ମାଲବାରି ମାସିକ କୋଡିଏ ଟଙ୍କା ବେତନରେ ଗୋଟିଏ ପାର୍ଶୀ ବିଦ୍ୟାଳୟରେ ଶିକ୍ଷକ ନିଯୁକ୍ତ ହେଲେ । ଏହି ବେତନ ଶୀଘ୍ର ବୃଦ୍ଧିପ୍ରାପ୍ତ ହୋଇ ମାସିକ ଷାଠିଏ ଟଙ୍କା ହେଲା । ସେ କଲେଜଅଧ୍ୟୟନ ଶେଷ କରିବା ପୂର୍ବରୁ ଶିକ୍ଷାକାର୍ଯ୍ୟରେ ମାସିକ ୧୫୦ ଟଙ୍କା ଉପାର୍ଜ୍ଜନ କରିବାକୁ ସମର୍ଥ ହୋଇଥିଲେ । ଏହି ସମୟରେ ଇଂରାଜୀଭାଷାରେ ତାହାଙ୍କର ଏପରି ଦକ୍ଷତା ଜନ୍ମିଥିଲା ଯେ, ସେ ଉକ୍ତ ଭାଷାରେ କେତେଗୁଡିଏ କବିତା ରଚନା କରିଥିଲେ । ସେହି କବିତାଗୁଡିକ ପ୍ରସିଦ୍ଧ

ଇଂଲଣ୍ଡୀୟ ଜନମାନଙ୍କ ଦ୍ୱାରା ବିଶେଷତଃ ବିଖ୍ୟାତ କବି ଟେନିସନଙ୍କ ଦ୍ୱାରା ପ୍ରଶଂସିତ ହୋଇଥିଲା ।

ଏହି ସମୟରୁ ବୈରାମଜୀ ସୁଖସ୍ୱାଚ୍ଛନ୍ଦ୍ୟରେ କାଳଯାପନ କରିବାକୁ ଲାଗିଲେ । ଗ୍ରନ୍ଥପ୍ରଣୟନ ଦ୍ୱାରା ସେ ପ୍ରଚୁର ଅର୍ଥ ଉପାର୍ଜନ କରୁଥିଲେ । ସେ ଯେତେଗୁଡ଼ିଏ ଗ୍ରନ୍ଥ ଲେଖିଥିଲେ ସେଥିମଧ୍ୟରେ "ଗୁଜରାଟ ଏବଂ ଗୁଜରାଟୀ" ନାମକ ଗ୍ରନ୍ଥ ସର୍ବୋତ୍କର୍ଷ ଲାଭ କରିଥିଲା । ସେ ଅନେକ ପ୍ରବନ୍ଧ ସଂବାଦପତ୍ରମାନଙ୍କରେ ପ୍ରକାଶ କରୁଥିଲେ ଏବଂ ତାହାଙ୍କ ଦ୍ୱାରା ସମ୍ପାଦିତ "ଇଣ୍ଡିଅନ ସ୍ପେକ୍ଟେଟର ବା ଭାରତୀୟ ଦର୍ଶକ" ପଶ୍ଚିମଭାରତରେ ପ୍ରଧାନ ଦେଶୀୟ ପତ୍ରିକା ହୋଇଥିଲା ।

ଗୌରବର ଉନ୍ନତ ଶିଖରରେ ଆରୋହଣ କରି ମଧ୍ୟ ସେ ସାଂସାରିକ ଉନ୍ନତିକୁ ତୁଚ୍ଛଜ୍ଞାନ କରୁଥିଲେ । ଆଜୀବନ ତାହାଙ୍କର ଲେଖନୀ ଭାରତୀୟ ଅସହାୟା ବିଧବାମାନଙ୍କ ଦୁଃଖ ଦୂରୀକରଣାର୍ଥେ ନିଯୋଜିତ ହୋଇଥିଲା । ବଙ୍ଗୀୟ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ତୁଲ୍ୟ ବୈରାମଜୀ ବିଧବାବିବାହ ପ୍ରଚଳନ କରିବା ନିମନ୍ତେ ଏବଂ ବାଲ୍ୟବିବାହପ୍ରଥା ରହିତ କରିବା ନିମନ୍ତେ ସ୍ୱଦେଶୀୟ ଲୋକମାନଙ୍କୁ ପ୍ରବୃତ୍ତ କରାଇଥିଲେ । ସେ ଜଣେ ମହାତ୍ମା ଏବଂ ଉତ୍ସାହସମ୍ପନ୍ନ ଭାରତୀୟ ସଂସ୍କାରକ ବୋଲି ସାଧାରଣରେ ପରିଚିତ ।

---

## ଭୂମିକମ୍ପ ।

ଆମ୍ଭମାନଙ୍କ ପରି ପୃଥିବୀକୁ ମଧ୍ୟ ନାନା ଉପଦ୍ରବ ସହିବାକୁ ହୁଏ । ଆମ୍ଭମାନଙ୍କ ଶରୀରପ୍ରତି ବାତଜ୍ୱର, ବମନ, କ୍ଷତାଦି ଯେପରି; ପୃଥିବୀପ୍ରତି ଭୂମିକମ୍ପ, ଅଗ୍ନ୍ୟୁଦ୍ଗମ, ଭୂଗର୍ଭଛିଦ୍ର ଠିକ୍ ସେହିପରି । ସୃଷ୍ଟିର ପ୍ରାରମ୍ଭରୁ ପୃଥିବୀ ସଙ୍ଗେ ଭୂମିକମ୍ପ ପ୍ରାୟ ଲାଗିରହିଅଛି । ତେବେ ପୂର୍ବେ ଯେପରି ଭୀଷଣ ଭୂମିକମ୍ପ ଘନଘନ ହେଉଥିଲା, ବର୍ତ୍ତମାନ ସେପରି ଲକ୍ଷିତ ହୁଏ ନାହିଁ । କାରଣ ପୃଥିବୀ ପୂର୍ବେ ଅଗ୍ନିବତ୍ ଅତି ଉତ୍ତପ୍ତ ଅବସ୍ଥାରେ ଥିଲା ଏବଂ ସେହି ଅଗ୍ନିମୟ ପୃଥିବୀ କ୍ରମଶଃ ତେଜ ବିକିରଣପୂର୍ବକ ବର୍ତ୍ତମାନ ଅଗ୍ନିଗର୍ଭ ହୋଇଅଛି । ଏହି

ଜଠରାଗ୍ନି ନୈସର୍ଗିକ ନିୟମରେ କ୍ରମଶଃ ଶାନ୍ତ ହେଉଥିଲେହେଁ ଅଦ୍ୟାପି ପୃଥିବୀ ତଜ୍ଜନିତ ବ୍ୟାଧିରୁ ମୁକ୍ତିଲାଭ କରି ନାହିଁ ।

ଅଗ୍ନ୍ୟୁଦ୍ଗମ ଭୂମିକମ୍ପର ସହଚର । ଅନେକ ସ୍ଥଳରେ ଭୂମିକମ୍ପର ସମକାଳରେ ସନ୍ନିହିତ ଆଗ୍ନେୟଗିରିରୁ ଅଗ୍ନ୍ୟୁଦ୍ଗତ ହେଉଥିବାର ପ୍ରମାଣ ମିଳେ । ଏହିସବୁ ଦୈବ ଉପଦ୍ରବ ଦ୍ୱାରା ଆମ୍ଭମାନଙ୍କର ଆବାସଭୂମି ପୃଥିବୀରେ ଅଚିନ୍ତନୀୟ ପରିବର୍ତ୍ତନମାନ ସଂଘଟିତ ହୁଏ । କାହିଁ ମହାସାଗର ବିଶାଳ ମରୁସ୍ଥଳୀରେ, ଗମ୍ଭୀରହ୍ରଦ ପର୍ବତରେ ଏବଂ ଉନ୍ନତଭୂମି ସାଗରତଳରେ, କାହିଁ ବା ସଂକ୍ଷିପ୍ତସ୍ଥାନ ଗଭୀର ଗର୍ତ୍ତରେ ଏବଂ ବହୁଜନାକୀର୍ଣ୍ଣ ନଗର ମହାମରୁରେ ପରିଣତ



ଭୂମିକମ୍ପ ।

ହୁଏ । ଅତଏବ ଅଧୁନାତନ ଅନେକ ପର୍ବତ, ସାଗର, ମରୁଭୂମି, ଗର୍ତ୍ତ, ପ୍ରସ୍ରବଣାଦି ଉକ୍ତ ଉତ୍ପାତର ଗୋଟିଏ ଗୋଟିଏ ସ୍ଥାୟୀ କୀର୍ତ୍ତି । ଏହି ପ୍ରାକୃତିକ

ଉତ୍ପାତମାନଙ୍କରୁ ପରିତ୍ରାଣ ପାଇବାର ଉପାୟ ମାନବବୁଦ୍ଧିର ଅଗମ୍ୟ । ତଥାପି ତତ୍ତ୍ୱାନୁସନ୍ଧିତ୍ସୁମାନେ ତହିଁର କାରଣ ଅନୁସନ୍ଧାନରେ ସର୍ବଦା ତତ୍ପର । ଭୂମିକମ୍ପର ଉତ୍ପତ୍ତି ବିଷୟରେ ବୈଜ୍ଞାନିକମାନେ ଯେଉଁ କାରଣ ନିର୍ଦ୍ଦେଶ କରିଅଛନ୍ତି ତାହା ପ୍ରକାଶ କରିବାକୁ ହେଲେ ଅଗେ ସୃଷ୍ଟିର କ୍ରମ ଜାଣିବା ଆବଶ୍ୟକ ।

ପ୍ରାଚୀନ ଆର୍ଯ୍ୟମାନେ ସୃଷ୍ଟିପ୍ରକ୍ରିୟା ସମ୍ବନ୍ଧରେ ଏହିପ୍ରକାର ସିଦ୍ଧାନ୍ତ କରିଅଛନ୍ତି ଯେ, ସର୍ବପ୍ରଥମେ ମନରୁ (ସୂକ୍ଷ୍ମ ପରମାଣୁବିଶେଷ) ମହା ଆକାଶର ଉତ୍ପତ୍ତି ଏବଂ ଏହି ଆକାଶରୁ ବାୟୁ, ତହିଁରୁ ପୁଣି ତେଜ ଉତ୍ପନ୍ନ ହେଲା । ଏହି ତେଜ କ୍ରମଶଃ ଶୀତଳ ଓ ଘନ ହୋଇ ଜଳରୂପରେ ପରିଣତ ହେଲା ଏବଂ ଜଳରୁ ଆମ୍ଭମାନଙ୍କର ଆଧାରଭୂତା ପୃଥିବୀର ଉତ୍ପତ୍ତି ହୋଇଅଛି । ଆଧୁନିକ ପଣ୍ଡିତମାନଙ୍କ ମତରେ ସର୍ବପ୍ରଥମେ କେବଳ ସୂକ୍ଷ୍ମ ପରମାଣୁ କୋଟି କୋଟି ଯୋଜନ ବିସ୍ତୃତ ଥିଲା । ସମ୍ଭବତଃ ଏହି ଚଳିଷ୍ଣୁ ପରମାଣୁମାନଙ୍କର ଗୋଟିଏ କେନ୍ଦ୍ରାଭିମୁଖୀ ଗତି ଥିଲା ଏବଂ ଏହି ଗତିଦ୍ୱାରା ସେସମସ୍ତ କ୍ରମଶଃ ସନ୍ନିହିତ ଓ ସଂହତ ହୋଇ ବାୟୁ ଅପେକ୍ଷା ଲଘୁତର କୌଣସି ଦ୍ରବ୍ୟରେ ପରିଣତ ହେଲା । ପଶ୍ଚାତ୍ ସେହି ଲଘୁପଦାର୍ଥ କ୍ରମଶଃ ଘନୀଭୂତ ହୋଇ ବାୟୁ ଜଳାଦି ପରିଚିତ ଯୌଗିକ ପଦାର୍ଥର ଆକାର ଧାରଣ କଲା । କିନ୍ତୁ ଉକ୍ତ ଚଳିଷ୍ଣୁ ପରମାଣୁଗୁଡ଼ିକ କେନ୍ଦ୍ରାଭିମୁଖୀ ଗତିଦ୍ୱାରା ପରସ୍ପର ଆହତ ପ୍ରତିହତ ହୋଇ ସମଗ୍ର ପଦାର୍ଥ ମଧ୍ୟରେ ଏକ ଗତି ବା କମ୍ପନ ଉତ୍ପାଦନ କରୁଥିବାରୁ ସୃଷ୍ଟିର ଅତ୍ୟଚଞ୍ଚଳତା ବହୁକାଳଯାଏ ଥିଲା । କହିବାକୁ ଗଲେ ଭୂମିକମ୍ପ ସେତେବେଳେ ଦୈନନ୍ଦିନ ଘଟଣାର ଅନ୍ତର୍ଗତ ଥିଲା । କିନ୍ତୁ ବର୍ତ୍ତମାନ କାଳରେ ସେ ଚଞ୍ଚଳତା ନାହିଁ । ଏ ସମ୍ବନ୍ଧରେ ଲର୍ଡ଼ କେଲଭିନ୍ ନାମକ ଜଣେ ବୈଜ୍ଞାନିକ ଏହି କାରଣ ନିର୍ଦ୍ଦେଶ କରନ୍ତି ଯେ, କାଳକ୍ରମେ ଉକ୍ତ ପରମାଣୁଗୁଡ଼ିକ ଯେତେବେଳେ ଅଣୁରେ ପରିଣତ ହେଲେ, ସେତେବେଳେ ପୃଥିବୀର ପୂର୍ବଚଞ୍ଚଳତା ଅନ୍ତର୍ହିତ ହୋଇଗଲା ଏବଂ ସେହିଠାରୁ ସୃଷ୍ଟିର ପ୍ରାରମ୍ଭ ହେଲା । ଏହି ସମୟରେ ପୃଥିବୀ ଅତ୍ୟୁଷ୍ଣ ତରଳ ଅବସ୍ଥାରେ ଥିଲା । କ୍ରମେ ତାହା ସଙ୍କୁଚିତ ହେବାରୁ ଉପରିଭାଗ ଅଧିକ ଶୀତଳ

ଏବଂ ଘନ ହେଉଥିଲେହେଁ ଅଭ୍ୟନ୍ତରରେ ସେହି ତରଳପଦାର୍ଥ ଅଛି ଏବଂ ତହିଁର ଉଷ୍ଣତା ଉଣା ହେବା ତେଣିକି ଥାଉ, ବରଂ ସଙ୍କୋଚନଜନିତ ତାପ-ଦ୍ୱାରା ଅଧିକ ଉଷ୍ଣ ହେଉଅଛି । ଉପରେ କଠିନ ଏବଂ ଭିତରେ ତରଳପଦାର୍ଥ ରହିବା ଯୋଗୁଁ ଏଥିରେ ନାନା ଭଙ୍ଗପତନ ହେବାର ସମ୍ଭାବନା । ଅଧୁନିକ ବୈଜ୍ଞାନିକମାନଙ୍କ ମତରେ ସ୍ଥାନେ ସ୍ଥାନେ ଉପରସ୍ଥ କଠିନପଦାର୍ଥ ଯେତେ-ବେଳେ ତରଳସ୍ରୋତରେ ନିପତିତ ହୁଏ, ସେତେବେଳେ ସେହି ସ୍ରୋତ ସ୍ଥାନା-ବରୋଧବଶତଃ ଊର୍ଦ୍ଧ୍ୱକୁ ଉଠେ ବହିର୍ଗମନର ମାର୍ଗ ଅନ୍ୱେଷଣ କରେ ଏବଂ କୌଣସି ଛିଦ୍ର ପାଇଲାମାତ୍ରେ ଉଦ୍ଗତ ହୁଏ, ଏହା ଅଗ୍ନ୍ୟୁତ୍ପାତ । ଆଉ ସେହି ଉଦ୍ଗମନଜନିତ କମ୍ପନ ଏବଂ ଅଧଃପତନରେ ଭୂମିକମ୍ପ ସଂଘଟିତ ହୁଏ । ମାତ୍ର ଏହି ତରଳସ୍ରୋତ କ୍ରମଶଃ ଘନୀଭୂତ ହେଉଥିବାରୁ ଭବିଷ୍ୟତରେ ଅଗ୍ନ୍ୟୁତ୍ପାତ ଏବଂ ଭୂମିକମ୍ପର ଆଶଙ୍କା ଅତି ଅଳ୍ପ । ବୈଜ୍ଞାନିକ ପଣ୍ଡିତମାନେ ଆଲୋଚନା କରି ଦେଖିଅଛନ୍ତି ଯେ, ପୂର୍ବେ ଯେତେ ଅଗ୍ନ୍ୟୁତ୍ପାତ ହେଉଥିଲା, ବର୍ତ୍ତମାନ ସେତେ ନାହିଁ । ଅଗ୍ନେୟଗିରିର ସଂଖ୍ୟା ବହୁତ ଉଣା ହୋଇଅସିଲାଣି । ଭୂମିକମ୍ପର ଭୀଷଣତା ମଧ୍ୟ ବହୁପରିମାଣରେ ହ୍ରାସ ପାଇଅଛି । ଏଥିରୁ ଅନେକେ ଅନୁ-ମାନ କରନ୍ତି ପୃଥିବୀ କ୍ରମଶଃ ଶୀତଳ ହେଉ ହେଉ ଯେତେବେଳେ ସର୍ବତୋ-ଭାବରେ କଠିନ ହୋଇଯିବ, ସେତେବେଳେ ଭୂମିକମ୍ପ ଓ ଅଗ୍ନ୍ୟୁତ୍ପାତ ଏକା-ବେଳକେ ଲୁପ୍ତ ହୋଇଯିବ । କିନ୍ତୁ ଏ ସମ୍ବନ୍ଧରେ ଉକ୍ତ ବୈଜ୍ଞାନିକ ପଣ୍ଡିତ ଏହି ମୀମାଂସା କରିଅଛନ୍ତି ଯେ, ଭବିଷ୍ୟତରେ ଅଗ୍ନେୟଗିରିର ଅଗ୍ନ୍ୟୁତ୍ପାତ ଅବଶ୍ୟ ଲୋପପ୍ରାପ୍ତ ହୋଇଯିବ ଏବଂ ଯେଉଁସବୁ ସଜୀବ ଅଗ୍ନେୟଗିରି ଅଛି ତାହା କାଳକ୍ରମେ ନିର୍ବାପିତ ହୋଇଯିବ; କିନ୍ତୁ ଭୂମିକମ୍ପର ଲୋପ ବିଷୟରେ କୌଣସି ଆଶା ଦିଶୁ ନାହିଁ; କାରଣ ପୃଥିବୀ ଠାଣକି ନ କ୍ରମଶଃ କଠିନତର ହେଉଥିଲେ ମଧ୍ୟ ଭୂଗର୍ଭର ଆକୁଞ୍ଚନ ସ୍ଥଗିତ ହେବ ନାହିଁ । ଏହି ଆକୁଞ୍ଚନ ଯୋଗୁଁ ସ୍ଥାନେ ସ୍ଥାନେ ବଡ଼ ବଡ଼ ଗର୍ତ୍ତ ବା ଫାଟର ସୃଷ୍ଟି ହେଉଥିବ । ଏହିସବୁ ଭିତର ଗର୍ତ୍ତ ବା ଶୂନ୍ୟସ୍ଥାନ ପୂର୍ଣ୍ଣ କରିବାଲାଗି ମଧ୍ୟେ ମଧ୍ୟେ ଉପରୁ ମୃତ୍ତିକା ପ୍ରସ୍ତର ପ୍ରଭୃତି ଭୁସୁଡ଼ି ପଡ଼ିବ । ଏହିପରି ଭଙ୍ଗପାତ ଦ୍ୱାରା ମଧ୍ୟ ଭୂମିକମ୍ପ ପୂର୍ଣ୍ଣମାତ୍ରାରେ

ହୋଇପାରିବ । ସୁମାତ୍ରାଦ୍ୱୀପ ପ୍ରଭୃତିରେ ଇତାଲୀଜାତ ଭୂମିକମ୍ପ ଲର୍ଡ କେଲ୍‌ଭିନଙ୍କ ଏହି ମତର ପୋଷକତା କରୁଅଛି । ବିଗତ ଧୁମାତ୍ରା-ଭୂମିକମ୍ପରେ ଭୂପୃଷ୍ଠର କେତେକ ଅଂଶ ନୀଚ ହୋଇଯାଇଅଛି ଏବଂ ଏହି ନିମ୍ନଭୂମିରେ ଗୋଟିଏ ନଗରର ଏକ ଅଂଶ ସମୁଦ୍ରସାତ୍ ହୋଇଅଛି । ଜାପାନରେ ମଧ୍ୟ ଅଳ୍ପକାଳ ହେଲା ସେହିପରି ଗୋଟିଏ ଭୂମିକମ୍ପ ହୋଇଥିଲା, ସେଥିରେ ଗୋଟିଏ ସ୍ଥାନ ପ୍ରାୟ ତେରହାତ ତଳକୁ ଦବିଯାଇଅଛି । ଏହିସବୁ ସ୍ଥାନର ଅଧଃସ୍ଥିତ ମୃତ୍ପାଷାଣାଦି କଠିନାଂଶ ପୂର୍ବବତ୍ ବିଚ୍ଛିନ୍ନ ହୋଇ ନ ଥିଲେ ଏପରି କଦାପି ଘଟି ନ ଥାନ୍ତା ।

ଉଲ୍ଲିଖିତ ଦୈବଉପଦ୍ରବର କଥା ଭାବିଲେ ମାନବସମାଜର ଘୋର ଆତଙ୍କ ଉପସ୍ଥିତ ହୁଏ । ମାନବ ବୁଦ୍ଧିବଳରେ ଏଥିର କାରଣମାତ୍ର ଅନୁମାନ କରିପାରୁଅଛି, କିନ୍ତୁ ସେଥିରେ ସୃଷ୍ଟିକର୍ତ୍ତାଙ୍କର କି ଗୂଢ଼ ଉଦ୍ଦେଶ୍ୟ ସାଧିତ ହେଉଅଛି ତାହା ମାନବବୁଦ୍ଧିର ଅଗମ୍ୟ ।

---

## ସ୍ତୋତ୍ର ।

ଏ ଅନନ୍ତ ବିଶ୍ୱ ତୁମ୍ଭ ମହିମା କୀର୍ତ୍ତନ
ଅଶେଷ ପ୍ରକାରେ ବିଭୋ, କରେ ଅନୁକ୍ଷଣ ।
ତୁମ୍ଭ ଜ୍ୟୋତି ଲଭି ଚନ୍ଦ୍ର ତାରକା ଭାସ୍କର
ମଣ୍ଡନ୍ତି ଶୁଭ୍ର ଆଲୋକେ ନିଜ କଳେବର ।
ଦିବସ ରଜନୀ ପୁଣି ଋତୁପଟଳୀଏ,
ନିତ୍ୟ ଆବର୍ତ୍ତନଶୀଳ ରମଣୀୟ ଅତି,
ସୁନୀଳଗଗନ, ସିନ୍ଧୁ ରତ୍ନନିଳୟ
ଦରଶନେ ଦେଉଛନ୍ତି ତୁମ୍ଭ ପରିଚୟ ।
ତୁମ୍ଭର କଣାଳ ପ୍ରୀତି ରମ୍ୟ ବସନ୍ତରେ
ଅବତରି ଧରାତଳେ ଅନନ୍ଦ ବିତରେ ।

ତାରାମୟ ଗଗନକୁ, କଦମ୍ବକୁ ବନ
ମନୋଜ୍ଞ କୁସୁମ ଦଳେ ଶୋଭେ ବନସ୍ଥଳୀ ।
ତରୁଡାଳେ ବସି ପିକ ତୁମ୍ଭ ପ୍ରେମ ଗୀତ
ମନୋହର ତାନେ ଗାଇ ରମେ ଲୋକଚିତ୍ତ ।
ତୁମ୍ଭ ପରିମଳ ଘେନି ମଳୟ ପବନ
ବିଶ୍ୱଙ୍କ ପ୍ରସାଦ ବୋଲି କରେ ବିତରଣ ।
ନିଦାଘରବିର ତାପେ ଅଗ୍ନି ତେଜେ ବିଭୂଷିତ
ତୁମ୍ଭର ମହିମା ପ୍ରଭୁ ହୁଅଇ ବିଦିତ ।
ତୁମ୍ଭ ରବି ଏବେ ବର୍ଷେ ଖର ରଶ୍ମିରାଶି,
ତହିଁ ପରିଣାମେ ସୁଖ ଭୁଞ୍ଜେ ଧରାବାସୀ ।
ବରଷାରେ ଘନମାଳା ଶ୍ୟାମବେଶ ଧରି
ଗଗନେ ଘୋଷନ୍ତି ତୁମ୍ଭ ଆଜ୍ଞା ଅନୁସରି ।
ଭୀଷଣ [illegible]ଲ୍ଲଣନାଦ ଚପଳାସ୍ଫୁରଣ,
ତୁମ୍ଭର ମହିମା, ପ୍ରଭୋ! କରନ୍ତି ଘୋଷଣ ।
ପ୍ରଚଣ୍ଡ ଅରବେ ଏବେ ବହେ କଲ୍ଲୋଳିନୀ
ସିନ୍ଧୁ ସଙ୍ଗେ କହିବାକୁ ତୁମ୍ଭ ଜୟଧ୍ୱନି ।
ଶରଦେ ବିମଳ ନଭେ ଚନ୍ଦ୍ରମା ଉଜ୍ଜ୍ୱଳ,
ପ୍ରଫୁଲ୍ଲ କୁସୁମରାଜି, ସ୍ୱଚ୍ଛ ନଦୀଜଳ,
କେଦାରରେ ପକ୍ୱଶାଳି ଜୀବହିତକର
ପ୍ରକାଶନ୍ତି ତୁମ୍ଭ ପ୍ରେମ ଅସୀମ ସୁନ୍ଦର ।
ହେମନ୍ତ ଶିଶିରକାଳେ ତୁମ୍ଭରି ଆଦେଶେ
ପ୍ରକୃତି ସାଜଇ ଅତି ଦୀନହୀନ ବେଶେ ।
ଜଣାଏ ମାନବବର୍ଗେ ସମସ୍ତ ନଶ୍ୱର,
ଚିରସ୍ଥାୟୀ ନୁହେ କିଛୁ ଜଗତ ମଧ୍ୟର ।

ସକଳ ଋତୁଏ ତୁମ୍ଭ ଅଙ୍କ ଅନୁସରି
ଚଳନ୍ତି ନିବୃତଚକ୍ରେ ବର୍ଷେ ! ଏହିପରି ।

'ମଧୁସୂଦନ' ।

---

## ଯଯାତି ଉପାଖ୍ୟାନ ।

ଅତି ପ୍ରାଚୀନ କାଳରେ ଯଯାତି ନାମକ ଜଣେ ପ୍ରଧାନ ରାଜା ଥିଲେ । ସେ ଶତ୍ରୁଦମନ ଏବଂ ପ୍ରଜାପାଳନ କରି ବହୁକାଳଯାଏ ରାଜତ୍ୱ କରିଥିଲେ । ତାହାଙ୍କର ଦେବଯାନୀ ଓ ଶର୍ମ୍ମିଷ୍ଠା ନାମ୍ନୀ ଦୁଇଗୋଟି ପତ୍ନୀ ଥିଲେ । ଦେବଯାନୀଙ୍କ ଗର୍ଭରୁ ଯଦୁ ଏବଂ ତୁର୍ବସୁ ନାମକ ଦୁଇ ପୁତ୍ର ଏବଂ ଶର୍ମ୍ମିଷ୍ଠାଙ୍କ ଗର୍ଭରୁ ଦ୍ରୁହ୍ୟୁ, ଅନୁ ଏବଂ ପୁରୁ ନାମକ ତିନଗୋଟି ପୁତ୍ର ଜାତ ହୋଇଥିଲେ ।

କେତେକ ସମୟ ଅତିବାହିତ ହେଲାପରେ ଯଯାତି କାଳକ୍ରମେ ଜରାବସ୍ଥାପନ୍ନ ହେଲେ । ଇନ୍ଦ୍ରିୟର ଶକ୍ତି ହ୍ରାସ, ଅଙ୍ଗପ୍ରତ୍ୟଙ୍ଗର ଶୈଥିଲ୍ୟ ଏବଂ କେଶଶୁକ୍ଳତା ପ୍ରଭୃତି ବାର୍ଦ୍ଧକ୍ୟ-ଲକ୍ଷଣ ତାହାଙ୍କଠାରେ ସମ୍ପୂର୍ଣ୍ଣରୂପେ ପ୍ରକାଶ ପାଇଲା । ବିଚିତ୍ର ପତ୍ରପୁଷ୍ପଫଳଶୋଭିତ ଉଦ୍ୟାନର ଦୃଶ୍ୟ, ସୁନିର୍ମ୍ମଳ ଆକାଶର ଜ୍ୟୋତି, ସଦ୍ୟପ୍ରସ୍ଫୁଟିତ କୁସୁମର ମନୋହର ଗନ୍ଧ, ପକ୍ଷୀର ସୁମଧୁର ଗାନ, ସୁଶୀତଳ ମୃଦୁମନ୍ଦ ସମୀରଣ ଓ ସୁସ୍ୱାଦୁପକ୍ୱଫଳାସ୍ୱାଦନ ପ୍ରଭୃତି ନାନାବିଧ ସାଂସାରିକ ସୁଖକର ସାମଗ୍ରୀ ଆଉ ଯଯାତିଙ୍କର ସୁଖସେବ୍ୟ ହୋଇ ପାରିଲା ନାହିଁ ।

ବାର୍ଦ୍ଧକ୍ୟପ୍ରପୀଡିତ ରାଜା ସ୍ୱପତ୍ନୀ ଦେବଯାନୀଙ୍କର ପିତା ଶୁକ୍ରାଚାର୍ଯ୍ୟଙ୍କ ନିକଟରେ ଉପସ୍ଥିତ ହୋଇ ନିବେଦନ କଲେ "ହେ ପୁଣ୍ୟାତ୍ମନ୍! ଦେଖନ୍ତୁ ମୋତେ ବାର୍ଦ୍ଧକ୍ୟ ଆକ୍ରମଣ କରିଅଛି । ମୁଁ ଦିନକୁଦିନ ଦୁର୍ବଳତର ହେଉଅଛି । ଇନ୍ଦ୍ରିୟବାସନା ଚରିତାର୍ଥ ହୋଇ ପାରୁ ନାହିଁ; କିନ୍ତୁ ମୋର ବିଷୟଭୋଗ-ଲାଳସା ଅଦ୍ୟାପି ତୃପ୍ତ ହୋଇ ନାହିଁ । ଆଉ ମଧ୍ୟ ପ୍ରିୟତମା ପତ୍ନୀ ଓ ପ୍ରାଣପ୍ରତିମ



ଯଯାତି ଉପାଖ୍ୟାନ ।

ପୁତ୍ରମାନଙ୍କର ଚିରବିୟୋଗଦୁଃଖ ମୋତେ ମର୍ମନ୍ତୁଦ ଯନ୍ତ୍ରଣା ଦେଉଅଛି । ଏ ହେତୁରୁ ପୁନର୍ବାର ଯୌବନାବସ୍ଥା ପ୍ରାପ୍ତ ହେବା ମୋର ଏକାନ୍ତ ଇଚ୍ଛା ! ସର୍ବଶକ୍ତିମାନ୍ ଓ ସର୍ବଜ୍ଞ ଆପଣ ମୋହର ପୁନର୍ଯୌବନପ୍ରାପ୍ତିର ଉପାୟ ଅନୁଗ୍ରହପୂର୍ବକ

ପ୍ରକାଶ କରନ୍ତୁ ।” ଏହା ଶୁଣି ଅଗ୍ରର୍ଯ୍ୟ ଉତ୍ତର କଲେ “ରାଜନ୍! ତୁମ୍ଭ ପୁନର୍ଯୌବନପ୍ରାପ୍ତିର ଏକମାତ୍ର ଉପାୟ ଅଛି । ତାହା ଏହି :—ଯଦି କୌଣସି ଯୁବକଙ୍କର ଯୌବନ ସଙ୍ଗେ ଆପଣଙ୍କ ବାର୍ଦ୍ଧକ୍ୟର ବିନିମୟ ହେବ ତାହାହେଲେ ଆପଣ ପୁନର୍ବାର ଯୁବାବସ୍ଥା ପ୍ରାପ୍ତ ହୋଇ ପାରିବେ ।” ଏହା ଶୁଣି ଯଯାତି ଶ୍ୱଶୁରଙ୍କ ପଦତଳରେ ଭକ୍ତିପୂର୍ଣ୍ଣଚିତ୍ତରେ ସାଷ୍ଟାଙ୍ଗପ୍ରଣାମ କରି ଗୃହକୁ ପ୍ରତ୍ୟାଗମନ କଲେ । ଗୃହରେ ପ୍ରବିଷ୍ଟ ହୋଇ ଭାବିଲେ ମୋର ବାର୍ଦ୍ଧକ୍ୟଗ୍ରହଣପ୍ରାର୍ଥନା କାହାଠାରେ ଫଳବତୀ ହେବ । ପ୍ରତ୍ୟେକ ଲୋକ ପକ୍ଷରେ ଜୀବନ ଅତିଶୟ ମୂଲ୍ୟବାନ୍ ବସ୍ତୁ । ବାର୍ଦ୍ଧକ୍ୟକ୍ଲେଶ ସହ୍ୟ କରିବାକୁ କିଏ ଇଚ୍ଛା କରିବ? ପ୍ରିୟବସ୍ତୁ ସ୍ୱାର୍ଥକୁ ବା କିଏ ତ୍ୟାଗ କରିବ? ମୋହର ନିଜ ସନ୍ତାନମାନଙ୍କ ବ୍ୟତୀତ ଅନ୍ୟ କାହାକୁ ଏହି ଅଭିନ୍ତ ତ୍ୟାଗ ନିମିତ୍ତ ପ୍ରାର୍ଥନା କରିବା ବିଡ଼ମ୍ବନା ମାତ୍ର । ପୁତ୍ର ପିତାର ପ୍ରତିକୃତିମାତ୍ର । ପିତାଙ୍କୁ ସମ୍ମାନ ଓ ଭକ୍ତି କରିବା ଏବଂ ପିତୃଆଦେଶ ଅକୁଣ୍ଠିତଚିତ୍ତରେ ପାଳନ କରିବାହିଁ ପ୍ରତ୍ୟେକ ପୁତ୍ରର କର୍ତ୍ତବ୍ୟ । ଏଣୁ ମୋହର ଏହି ବାସନା ପୁତ୍ରମାନଙ୍କ ଦ୍ୱାରା ପୂରଣୀୟ ହେବ ।

ଏହିପରି ସିଦ୍ଧାନ୍ତ କରିବାପରେ ଯଯାତି ଜ୍ୟେଷ୍ଠପୁତ୍ର ଯଦୁଙ୍କୁ ଡାକି କହିଲେ “ଦେଖ ବତ୍ସ! ଅକାଳବାର୍ଦ୍ଧକ୍ୟ ମୋତେ କିପରି ହୀନାବସ୍ଥାପନ୍ନ କରିଅଛି । ମୁଁ ତୁମ୍ଭର ପ୍ରାଣଦାତା । ପ୍ରାଣପଣେ ଉପକାର କରିବା ତୁମ୍ଭର କର୍ତ୍ତବ୍ୟ । ଏହି ବୃଦ୍ଧାବସ୍ଥାରୁ ନିଷ୍କୃତି ଲାଭ କରିବାର ଉପାୟ ଆମ୍ଭେ ତୁମ୍ଭର ମାତାମହ ଶୁକ୍ରାଚାର୍ଯ୍ୟଙ୍କୁ ଜିଜ୍ଞାସା କରିଥିଲୁଁ । ଆଚାର୍ଯ୍ୟଅପଣେ ଏହି ଉପାୟ ନିର୍ଦ୍ଧାରଣ କଲେ : ଯଦି କୌଣସି ଯୁବକର ଯୌବନ ସହିତ ଆପଣଙ୍କ ବାର୍ଦ୍ଧକ୍ୟର ବିନିମୟ ହେବ ତାହାହେଲେ ଆପଣ ଇଚ୍ଛାନୁରୂପ ଯୌବନ ଉପଭୋଗ କରିପାରିବେ । ଏହି ହେତୁରୁ ଆମ୍ଭେ ଅନନ୍ୟଗତିକ ହୋଇ ତୁମ୍ଭକୁ କହୁଅଛୁଁ ଆମ୍ଭର ବାର୍ଦ୍ଧକ୍ୟସହି ତୁମ୍ଭ ଯୌବନର ବିନିମୟ କର । କେତେକ ବର୍ଷପରେ ଯେତେବେଳେ ଆମ୍ଭର ବିଷୟ-ଭୋଗ-ବାସନା ପ୍ରଶମିତ ହେବ ସେତେବେଳେ ତୁମ୍ଭେ ଆପଣାର ଯୌବନ ପୁନଃପ୍ରାପ୍ତ ହେବ । ଅବଶ୍ୟ ଏହି କାର୍ଯ୍ୟଦ୍ୱାରା ତୁମ୍ଭର ଜୀବନ ସାର୍ଥକ ହେବ ଏବଂ ତୁମ୍ଭେ ମନୁଷ୍ୟସମାଜରେ ପ୍ରଶଂସିତ ହେବ । ଇହକାଳ

ଏବଂ ପରକାଳରେ ସୁଖ୍ୟାତି ଓ ସୁଖ ଭୋଗ କରିପାରିବ ।" ଏହା ଶୁଣି ଯଦୁ ଉତ୍ତର କଲେ "ରାଜନ୍! ଇନ୍ଦ୍ରିୟ-ଭୋଗ-ବାସନା ସମସ୍ତଙ୍କୁ କବଳିତ କରିଅଛି । ଆପଣଙ୍କର ଯେପରି ଭୋଗ-ଇଚ୍ଛା ଅଛି ମୋହର ମଧ୍ୟ ସେହିପରି ଅଛି । ଯଦି ଏ ଯୌବନକୁ ମୁଁ ଆପଣଙ୍କୁ ପ୍ରଦାନ କରିବି ତାହାହେଲେ ଆଉ ମୋ ଜୀବନରେ ମୁଁ କିଛି ସୁଖଭୋଗ କରିପାରିବି ନାହିଁ । ଜରାଗ୍ରସ୍ତ ଏବଂ ଦୁର୍ବଳ ହେଲେ ମୁଁ ଆଉ ଶତ୍ରୁସଂହାରକ ହୋଇ ଜନସାଧାରଣରେ ବୀର ବୋଲି ପରିଗଣିତ ହୋଇ ପାରିବି ନାହିଁ । ମୁଁ ଆପଣଙ୍କର ଜ୍ୟେଷ୍ଠପୁତ୍ର ଏବଂ ଆପଣଙ୍କପରେ ରାଜସିଂହାସନର ଅଧିକାରୀ । ଅତଏବ ଆପଣ ଏହି ଦୁର୍ବହଭାର ମୋ ଉପରେ ନ୍ୟସ୍ତ ନ କରି ଅନ୍ୟପୁତ୍ରମାନଙ୍କ ମଧ୍ୟରୁ ଜଣଙ୍କୁ ନିର୍ବାଚନ କରନ୍ତୁ ।" ଯଦୁଙ୍କର ଏପରି ପ୍ରତିକୂଳ ବାଣୀ ଶୁଣି, ଯଯାତି ଅସନ୍ତୁଷ୍ଟ ହୋଇ ଅଭିସମ୍ପାତ ଦେଲେ "ତୁମ୍ଭର ପୁତ୍ର ସିଂହାସନ ଅଧିକାର କରିପାରିବେ ନାହିଁ ।" ତତ୍ପରେ ଯଯାତି କନିଷ୍ଠଭିନ୍ନ ଅନ୍ୟ ତିନିପୁତ୍ର ତୁର୍ବସୁ, ଦ୍ରୁହ୍ୟୁ ଏବଂ ଅନୁଙ୍କ ନିକଟରେ ସ୍ୱ ଅଭିଲାଷ ପୂର୍ବୋକ୍ତ ପ୍ରକାରେ ପ୍ରକାଶ କରିଥିଲେ । କିନ୍ତୁ ତୁର୍ବସୁ ରୂପ କୁତ୍ସିତ ହେବା ଭୟରେ; ଦ୍ରୁହ୍ୟୁ ହସ୍ତୀ, ଅଶ୍ୱ ପ୍ରଭୃତି ବାହନ ଆରୋହଣ କରି ନ ପାରିବା ଭୟରେ ଏବଂ ଅନୁ ଧର୍ମାଚରଣ କରି ନ ପାରିବା ଭୟରେ ପିତାଙ୍କର ଏପ୍ରକାର ପ୍ରସ୍ତାବରେ ଅନଭିମତ ପ୍ରକାଶ କରିଥିଲେ । ଯଯାତି ପୁତ୍ରତ୍ରୟଙ୍କର ଏତଦନୁରୂପ ଉତ୍ତର ଶୁଣି ତୁର୍ବସୁଙ୍କୁ ଶାପ ଦେଲେ "ତୁମ୍ଭର ସନ୍ତାନସନ୍ତତିମାନେ ନୀଚ ଓ ଘୃଣ୍ୟ ହେବେ"; ଦ୍ରୁହ୍ୟୁଙ୍କୁ କ୍ରୋଧରେ କହିଲେ "ତୁମ୍ଭେ ହସ୍ତ୍ୟଶ୍ୱଗୋମେଷାଦିଶୂନ୍ୟ ରାଜ୍ୟରେ ରାଜପଣ କରିବ ।" ଆଉ ଅନୁ ଅସମୟରେ ବୃଦ୍ଧାବସ୍ଥା ପ୍ରାପ୍ତ ହୋଇ ଧର୍ମାଚରଣ କରିପାରିବେ ନାହିଁ ବୋଲି ଅଭିଶପ୍ତ ହେଲେ ।

ଯଯାତି ପରିଶେଷରେ କନିଷ୍ଠପୁତ୍ର ପୁରୁଙ୍କୁ ସସ୍ନେହରେ ଆହ୍ୱାନ କରି ନିଜ ଅଭିମତ ପ୍ରକାଶ କଲେ । ପୁରୁ ପିତାଙ୍କର ବାକ୍ୟ ଶ୍ରବଣ କରି କୃତାଞ୍ଜଳିପୁଟରେ ଦଣ୍ଡାୟମାନ ହୋଇ ଉତ୍ତର କଲେ "ପିତଃ ! ମୋର ଯୌବନ ଗ୍ରହଣ କରନ୍ତୁ । ଆପଣଙ୍କର ସାମାନ୍ୟ ଉପକାର ନିମନ୍ତେ ଯୌବନ କଣ, ମୁଁ

ମୋହର ପ୍ରାଣ ସୁଦ୍ଧା ଦେଇ ପାରେଁ । କାରଣ ଆପଣ ମୋହର ଜନ୍ମଦାତା ଗୁରୁ, ତେଣୁ ମୋର ଜୀବନ ଏବଂ ଯୌବନ ସବୁ ଆପଣଙ୍କର । ଅତଏବ ଆପଣଙ୍କର ଯାହା ଇଚ୍ଛା ତାହା ଅନାୟାସରେ ଗ୍ରହଣ କରିପାରନ୍ତି । ଆପଣଙ୍କର ସାମାନ୍ୟ ଉପକାର ସାଧନ କରିପାରିଲେ ମୋହର ଜୀବନ ସାର୍ଥକ ହେବ ।”

ଏହା ଶୁଣି ରାଜା ପ୍ରସନ୍ନଚିତ୍ତରେ କହିଲେ “ପୁତ୍ର ! ତୁମ୍ଭେ ଧନ୍ୟ, ତୁମ୍ଭେହିଁ ମୋହର ପ୍ରକୃତ ସନ୍ତାନ । ମୋହ ଉତ୍ତାରେ ତୁମ୍ଭେ ସିଂହାସନ ଅଧିକାର କରିବ ଏବଂ ତୁମ୍ଭର ପୁତ୍ରପୌତ୍ରାଦି ତୁମ୍ଭ ଅନ୍ତେ କ୍ରମେ ଏ ରାଜସିଂହାସନ ଅଧିରୋହଣ କରି ସମଗ୍ର ପୃଥିବୀରେ ସୁଖ୍ୟାତି ଲାଭ କରିବେ ।

ତତ୍ପରେ ଯଯାତି ପୁରୁଙ୍କର ଯୌବନ ଗ୍ରହଣ କରି ପୁନର୍ବାର ଯୌବନାବସ୍ଥା ପ୍ରାପ୍ତ ହେଲେ ଏବଂ ଅନେକ ବର୍ଷ ପର୍ଯ୍ୟନ୍ତ ରାଜତ୍ୱ କରି ଜୀବନରେ ନାନାସୁଖ ଉପଭୋଗ କଲେ । ଯେତେବେଳେ ବିଷୟଭୋଗ-ବାସନାରୁ ନିବୃତ୍ତ ହେଲେ ସେତେବେଳେ ସେ ପୁରୁଙ୍କୁ ଯୌବନ ପ୍ରତ୍ୟର୍ପଣ କରି ନିଜ ବାର୍ଦ୍ଧକ୍ୟ ଗ୍ରହଣ କଲେ ।

ଏଥିଉତ୍ତାରୁ ଯଯାତି ପୁରୁଙ୍କୁ ସିଂହାସନରେ ଅଭିଷିକ୍ତ କରାଇ ନିଜେ ବାନପ୍ରସ୍ଥବୃତ୍ତି ଅବଲମ୍ବନପୂର୍ବକ ଅରଣ୍ୟକୁ ପ୍ରସ୍ଥାନ କଲେ । ପୁରୁ ଜଣେ ଶକ୍ତିଶାଳୀ ରାଜା ହୋଇଥିଲେ ଏବଂ ତାହାଙ୍କଠାରୁ ପୌରବବଂଶର ଉତ୍ପତ୍ତି ହୋଇଅଛି ।

---

## ମହାତ୍ମା ପିଟର ।

ଯେଉଁ ଦେଶ ଉତ୍ତରରେ ଶ୍ୱେତସାଗରଠାରୁ ଦକ୍ଷିଣରେ କୃଷ୍ଣସାଗର ପର୍ଯ୍ୟନ୍ତ ବିସ୍ତୃତ ଏବଂ ଯେଉଁ ଦେଶ ପୂର୍ବ ପଶ୍ଚିମରେ ଏସିଆ ଓ ଇଉରୋପର ଅର୍ଦ୍ଧାଧିକ ଭୂଭାଗ ଅଧିକାର କରିଅଛି, ମହାତ୍ମା ପିଟର ସେହି ବିଶାଳ ରୁଷ-ସାମ୍ରାଜ୍ୟର ଅଧୀଶ୍ୱର ଥିଲେ । ଏହି ମହାପୁରୁଷ ୧୬୭୨ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ଦଶବର୍ଷ ବୟସ ସମୟରେ ରୁଷିୟାର ଜାର୍ ବା ସମ୍ରାଟ୍

ପଦରେ ଅଭିଷିକ୍ତ ହୋଇ, ସପ୍ତଦଶବର୍ଷ ବୟଃକ୍ରମ ପୂର୍ଣ୍ଣ ନ ହେଉଣୁଁ ସାମ୍ରାଜ୍ୟର ମହା ଦାୟିତ୍ୱ ସ୍ୱହସ୍ତରେ ଗ୍ରହଣ କରିଥିଲେ । ସେ ବଡ଼ ମନସ୍ୱୀ, ନିର୍ଭୟ-ଚିତ୍ତ ଓ ସବଳକାୟ ବୀରପୁରୁଷ ଥିଲେ । ସେହି ସମୟରେ ପର୍ତ୍ତୁଗାଲ, ସ୍ପେନ, ହଲଣ୍ଡ ଓ ଇଂଲଣ୍ଡରୁ ବାଣିଜ୍ୟପୋତ ଦୂରଦେଶକୁ ଯାତାୟାତ କରି ବିପୁଳ ସମ୍ପତ୍ତି ଉପାର୍ଜ୍ଜନ କରୁଥିଲା । ରୁଷିଆ ସମଗ୍ର ଇଉରୋପଖଣ୍ଡରେ ବୃହତ୍ତମ



ମହାତ୍ମା ପିଟର ।

ହେଲେ ମଧ୍ୟ ପରିମିତ ବାଣିଜ୍ୟପୋତ ସଂଗ୍ରହ କରି ପାରି ନ ଥିଲା । ସୁତରାଂ ବାଣିଜ୍ୟର ଉନ୍ନତିସାଧନ ଏହାଙ୍କ ଜୀବନର ପ୍ରଥମ କାର୍ଯ୍ୟ ହେଲା ।

ଅନନ୍ତର ରାଜମାତାଙ୍କ ପ୍ରଧାନ ଅମାତ୍ୟମାନଙ୍କ ଉପରେ ସାମ୍ରାଜ୍ୟର ଶାସନଭାର ଅର୍ପଣ କରି, ସ୍ୱୟଂ ପୋତନିର୍ମ୍ମାଣକୌଶଳ ଶିକ୍ଷା କରିବା ନିମିତ୍ତ ହଲଣ୍ଡ ଯାତ୍ରା କରିଥିଲେ । ଏଠାରେ ଉପସ୍ଥିତ ହୋଇ ସର୍ବପ୍ରଥମେ ଗୋଟିଏ



ରୁଷୀୟ ସମ୍ରାଟ୍ ପିଟରଙ୍କ ଜାହାଜ-କାରଖାନାରେ କାର୍ଯ୍ୟକରୁଥିବାର ଚିତ୍ର ।

ପୋତକାର୍ଯ୍ୟାଳୟରେ ସ୍ୱଳ୍ପବେତନଶ୍ରେଣୀ କର୍ମଚାରୀପଦରେ ନିଯୁକ୍ତ ହେଲେ । ଏହି ସମୟରେ ସେ ରାଜଯୋଗ୍ୟ ପରିଚ୍ଛଦ ଓ ଖାଦ୍ୟପେୟର ଅଭ୍ୟାସର ଭୁଲିଯାଇ ଅତିସାମାନ୍ୟ ବେଶରେ ଅନ୍ୟାନ୍ୟ କର୍ମଚାରୀଙ୍କ ସହିତ ମିଳିମିଶି ଯେପରି କାର୍ଯ୍ୟ କରୁଥିଲେ ତହିଁରୁ ତାଙ୍କ ହୃଦୟର ଉଚ୍ଚାକାଂକ୍ଷା ସହଜରେ ଜଣାପଡ଼େ । ଦୁଃଖକୁ ସୁଖ ଓ ଅପମାନକୁ ସମ୍ମାନ ମନେକରି ସେ ଅଦ୍ଭୁତ କୌଶଳରେ ସ୍ୱୀୟ କର୍ତ୍ତବ୍ୟ ସମାଧାନ କରୁଥିଲେ । ଦିନେ କେତେଜଣ ବିଦେଶୀ ବନ୍ଧୁ ତାହାଙ୍କୁ ଜିଜ୍ଞାସା କଲେ "ଆପଣ ସୁବିଶାଳ ସାମ୍ରାଜ୍ୟର ରାଜସୁଖ ପରିତ୍ୟାଗ କରି କାହିଁକି ଶ୍ରମଜୀବୀମାନଙ୍କ ସହିତ କାର୍ଯ୍ୟ କରୁଅଛନ୍ତି ?" ସେ ଉତ୍ତର କରିଥିଲେ "ରାଜା ରାଜକରଦ୍ୱାରା ନିଜର ବିଳାସବାସନା ପରିତୃପ୍ତ କରିବା ନିମନ୍ତେ ଧରାକୁ ଆସି ନାହିଁ ; ସାମ୍ରାଜ୍ୟର ଗୁରୁଭାର ତାହା ଉପରେ ନ୍ୟସ୍ତ । ଦେଶ କିପରି ଉନ୍ନତ ହେବ, ପ୍ରଜାମାନେ କିପରି ଉନ୍ନତ ହେବେ, ଏବ ଦେଶରେ କିପ୍ରକାରେ ଜ୍ଞାନାଲୋକ ବିସ୍ତାରିତ ହେବ, ଏହା ତାହାଙ୍କ ଜୀବନରେ ପ୍ରଧାନ କାର୍ଯ୍ୟ । ଏହି ସଂସାର କର୍ମକ୍ଷେତ୍ର ଏବ ଏହି ଜୀବନ କର୍ମମୟ । ଯେସବୁ କାର୍ଯ୍ୟ ନୈତିକ ଗବେଷଣାପୂର୍ଣ୍ଣ ସେପରି କର୍ମାନୁଷ୍ଠାନରେ କୌଣସି ପ୍ରକାର ଅପମାନ ନାହିଁ ।" ଅହୋ ! କି ମହାନୁଭବତା !

କେତେକାଳ ପରେ ସେ ଲଣ୍ଡନ ଯାତ୍ରା କଲେ । ସେଠାରେ ମଧ୍ୟ ପୋତାଗାରରେ ଇଂରେଜ କର୍ମଚାରୀଙ୍କ ସହିତ ସଦ୍ଭାବ ଓ ଗାଢ଼ସ୍ନେହ ସଂସ୍ଥାପନ କରି ସ୍ୱକୀୟ ଅଭିଳାଷ ପୂରଣ କଲେ । କଠିନ ଅଧ୍ୟବସାୟ ଦ୍ୱାରା ସେ ଉତ୍ତରୋତ୍ତର ଆତ୍ମୋନ୍ନତି ଏପରିଭାବରେ ସାଧନ କରିଥିଲେ ଯେ, ତତ୍ରତ୍ୟ ପ୍ରଧାନ ପ୍ରଧାନ ବୈଜ୍ଞାନିକମାନେ ତାହାଙ୍କର ଭୂୟସୀ ପ୍ରଶଂସା କରିଥିଲେ । କର୍ମକ୍ଷେତ୍ରରୁ ଅବସର ପାଇଲେ ବିଦ୍ୟାଳୟର ବିଶିଷ୍ଟ ଛାତ୍ରମାନଙ୍କ ଭଳି ସେ ସାହିତ୍ୟ, ଗଣିତ, ବିଜ୍ଞାନ ପ୍ରଭୃତି ନାନାବିଧ ଶାସ୍ତ୍ର ଆଲୋଚନା କରୁଥିଲେ । କାଗଜ କଳ, କରତ କଳ, ଘଟିକା ଯନ୍ତ୍ର ପ୍ରଭୃତି ଯାହାକିଛି ଦେଖୁଥିଲେ ତାହାର ମୂଳ କାରଣ ଆଲୋଚନା କରୁଥିଲେ ।

ଦେଶଦେଶାନ୍ତରରୁ ଏହିପରି ଜ୍ଞାନାଲୋକ ପାଇ ପରିଶେଷରେ ନିଜ

ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କଲେ । ଏଠାରେ ପ୍ରଥମେ ନୌକାଗାରର ମୂଳଭିତ୍ତି ସଂସ୍ଥାପନ କରି ତହିଁରେ ଦେଶହିତକର କାର୍ଯ୍ୟରେ ନିଯୁକ୍ତ ହେଲେ । ସୂତ୍ରଧାର, କର୍ମକାର ଓ ତନ୍ତୁବାୟ ପ୍ରଭୃତି ବିବିଧ ଶିଳ୍ପୀଗଣଙ୍କୁ କର୍ମଭୂମିରେ ନିଃସଙ୍କୋଚ ହୃଦୟରେ ଦଣ୍ଡାୟମାନ ରହି ସେମାନଙ୍କ କର୍ମପ୍ରଣାଳୀ ଓ ମାର୍ଜ୍ଜିତ ଶିଳ୍ପଗୁଣ ଶିକ୍ଷା ଦେଉଥିଲେ । ଆବଶ୍ୟକ ହେଲେ ସେମାନଙ୍କ ସହିତ ଅକୁଣ୍ଠିତଚିତ୍ତରେ କାର୍ଯ୍ୟ କରୁଥିଲେ ଏବଂ ସେଥିରୁ ଯେଉଁ ଅର୍ଥ ସଂଗ୍ରହ କରୁଥିଲେ ତଦ୍ଦ୍ୱାରା ନିଜର ପରିମିତ ବ୍ୟୟ ନିର୍ବାହ କରୁଥିଲେ । ନୌକା ଓ ବାଷ୍ପୀୟ ତରଣୀର ଗମନାଗମନ ନିମିତ୍ତ ସେ ଶ୍ରମଜୀବୀମାନଙ୍କ ସହିତ ମୃତ୍ତିକା ଖନନ କରି ଜଳପଥ ନିର୍ମାଣ କରୁଥିଲେ । କେଉଁଠାରେ ବିଦ୍ୟାଳୟ, କେଉଁଠାରେ ପୁସ୍ତକାଗାର, କେଉଁଠାରେ ଚଡ଼ିଆଖାନା, କେଉଁଠାରେ ବା ଛାପାଖାନା ଇତ୍ୟାଦି ଅନେକ ପ୍ରକାର ଅନୁଷ୍ଠାନ ତାଙ୍କ ଜୀବନର ମୁଖ୍ୟବ୍ରତ ଥିଲା । ସମସ୍ତ ଦିନ କଠୋର ପରିଶ୍ରମ କରି ସେ କେବେହେଁ କ୍ଲାନ୍ତି ଅନୁଭବ କରୁ ନ ଥିଲେ । ପୀଡ଼ିତ ଅବସ୍ଥାରେ ମଧ୍ୟ ବନ୍ଦର, କେନେଲ, ଲୌହକାରଖାନା ଓ ଲବଣଗୋଦାମ ପ୍ରଭୃତିର କାର୍ଯ୍ୟ ପରିଦର୍ଶନ କରୁଥିଲେ । କେତେକେତେବେଳେ ଲୌହକାରଖାନାରେ ପଶି ହାତୁଡ଼ି ଧରି ନିଜ ହସ୍ତରେ ଲୁହା ପିଟି ଲୌହକଡ଼ି ପ୍ରସ୍ତୁତ କରୁଥିଲେ ।

ମସ୍କୋ ରୁଷିଆର ଗୋଟିଏ ପ୍ରଧାନ ନଗର । ଏହି ନଗରଟି ରୁଷିଆର ମଧ୍ୟସ୍ଥଳରେ ଅବସ୍ଥିତ । ଏହା ପୂର୍ବକାଳରେ ରୁଷିଆର ରାଜଧାନୀ ଥିଲା । ଏହି ସହର ସମୁଦ୍ରରୁ ବହୁଦୂରରେ ଅବସ୍ଥିତ ଥିବାରୁ ଜାହାଜାଦି ଗମନାଗମନର ସୁବିଧା ନ ଦେଖି ପିଟର ସମୁଦ୍ରତୀରରେ ସ୍ୱୀୟ ରାଜଧାନୀ ସ୍ଥାପନର ସଂକଳ୍ପ କରିଥିଲେ । ବଲ୍ଟିକସାଗରଗାମିନୀ ଯେଉଁ ନଦୀର ମୁହାଣ ନିକଟରେ ଗୋଟିଏ ପ୍ରକାଣ୍ଡ ନିମ୍ନଭୂମି ଥିଲା ସେଠାରେ କେବଳ ଅଳ୍ପସଂଖ୍ୟକ ମତ୍ସ୍ୟବ୍ୟବସାୟୀ ଧୀବର ବ୍ୟତୀତ ଅନ୍ୟ କେହି ବାସ କରୁ ନ ଥିଲେ । ସେହି ସ୍ଥାନରେ ପିଟର ରାଜଧାନୀ ସ୍ଥାପନ କରିବାର ସ୍ଥିର କଲେ । ନୂତନ ସହରର ନିର୍ମାଣକାର୍ଯ୍ୟ ତତ୍ତ୍ୱାବଧାନ କରିବା ନିମନ୍ତେ ପିଟର ପ୍ରଥମେ ସେ ସ୍ଥାନରେ ଗୋଟିଏ କୁଟୀର

ନିର୍ମ୍ମାଣ କରିଥିଲେ (ଅଦ୍ୟାପି ସେ କୁଟୀରଟି ମଧ୍ୟ ସୁରକ୍ଷିତ ଅଛି) । ସେହି ନିମ୍ନଭୂମି ପୋଖିତ କରିବା ନିମନ୍ତେ ଅପରିମିତ କାଷ୍ଠ ଓ ମୃତ୍ତିକା ବହୁଦୂରରୁ ଆନୀତ ହୋଇଥିଲା । ସଂଖ୍ୟାତୀତ ପ୍ରଜାମଣ୍ଡଳୀ ଉକ୍ତ କାର୍ଯ୍ୟରେ ନିଯୁକ୍ତ ଥିଲେ । ଏପରି ଦୁରୂହ ବ୍ୟାପାରରେ ଅସଂଖ୍ୟ ଅସଂଖ୍ୟ ଲୋକ ପ୍ରାଣ ଦେଇଥିଲେ ମଧ୍ୟ ପିଟର ଏପରି ଅବଚଳିତ ହୃଦୟରେ ସ୍ୱୀୟ ପ୍ରତିଜ୍ଞା ସାଧନ କଲେ ଯେ, ଏକବର୍ଷମଧ୍ୟରେ ବିଂଶତିସହସ୍ର ବାଟଗୃହ ସେଠାରେ ମସ୍ତକ ଉତ୍ତୋଳନ କଲା । ପିଟରଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିବାରୁ ସେହି ସହର ସେଣ୍ଟ୍ପିଟର୍ସବର୍ଗ ବା ପିଟରଙ୍କ ନଗର ନାମରେ ଅଭିହିତ ହେଲା । ଆଜିକାଲି ଏହି ସ୍ଥାନ ସୁଧାଧବଳିତ ସୁରମ୍ୟ ପ୍ରାସାଦ, ବିବିଧପଣ୍ୟପୂରିତ ବିପଣୀ, ବାଷ୍ପବିନ୍ଦ୍ୟାଳିତ ଶକଟ ଓ ଆଲୋକମାଳାରେ ପରିପୂର୍ଣ୍ଣ ହୋଇ ପ୍ରାୟ ବିଂଶତିଲକ୍ଷ ଲୋକଙ୍କର ଅଧିବାସ ସ୍ଥଳ ହୋଇଅଛି ।

ପିଟର ଏହିପରି ଆଜୀବନ କଠୋର ଅଧ୍ୟବସାୟ କରି ଦେଶର ମାନ, ଜ୍ଞାନ ଓ କ୍ଷମତା ବହୁପରିମାଣରେ ବଢ଼ାଇଥିଲେ । ବିଦେଶରୁ ଧନ ଆସି କପରି ଶିଳ୍ପ, ବିଜ୍ଞାନ ପ୍ରଭୃତି ଦେଶହିତକର କର୍ମର ଉନ୍ନତି ହେବ ଏଥିସକାଶେ ଅନେକେକ ଗୁଣ ମନୀଷୀଙ୍କୁ ଦୂରଦେଶକୁ ପ୍ରେରଣ କରୁଥିଲେ । ପିଟରଙ୍କ ପୂର୍ବରୁ ରୁଷିଆ ଗୋଟିଏ ଶକ୍ତିଶାଳୀ ରାଜ୍ୟ ବୋଲି ଗୃହୀତ ହେଉ ନ ଥିଲା, କିନ୍ତୁ ଏହାଙ୍କ ସମୟରେ ୟୁରୋପର ପ୍ରଧାନ ରାଜଶକ୍ତିମାନଙ୍କ ମଧ୍ୟରେ ସେ ଅନ୍ୟତମ ଶକ୍ତି ବୋଲି ପରିଗଣିତ ହେଲା ।

ପରୋପକାର ଏହାଙ୍କ ଜୀବନର ପ୍ରଧାନ ବ୍ରତ ଥିଲା । ପରର ଦୁଃଖ ଦେଖିଲେ ଏହାଙ୍କ ହୃଦୟ ବିଚଳିତ ହେଉଥିଲା । ଦିନେ ଗୋଟିଏ ନୌକା ଜଳମଗ୍ନ ହେଲା, ସେ ଜଳମଧ୍ୟରେ ପ୍ରବେଶକରି ତତ୍‌କ୍ଷଣାତ୍ ଯାତ୍ରୀମାନଙ୍କୁ ବିପଦରୁ ଉଦ୍ଧାର କରିଥିଲେ । କିନ୍ତୁ ଦୁର୍ଭାଗ୍ୟର ବିଷୟ, ଏହି ଘଟଣାରେ ବ୍ୟାଧି ତାଙ୍କର ଅତିଥି ହେଲେ । ଆର୍ଦ୍ରବସ୍ତ୍ର ଓ ଆର୍ଦ୍ରଦେହରେ ନଗରକୁ ପ୍ରତ୍ୟାବୃତ୍ତ ହୋଇ ଜ୍ୱରବେଗରେ ପୀଡ଼ିତ ହେଲେ, ଶେଷରେ ୧୭୨୫ ଖ୍ରୀଷ୍ଟାବ୍ଦରେ ୫୩ ବର୍ଷ ବୟଃକ୍ରମ କାଳରେ ସେଣ୍ଟ୍ପିଟର୍ସବର୍ଗରେ ମାନବଲୀଳା-ସମ୍ବରଣ

କଲେ । ସେହିଦିନଠାରୁ ଏକ ଉନ୍ମୁକ୍ତ ସ୍ଥାନରେ ପିଟରଙ୍କ ପାଷାଣମୟୀ ମୂର୍ତ୍ତି ଅଶ୍ୱପୃଷ୍ଠରେ ସ୍ଥାପିତ ହୋଇ ସହରର ଶୋଭା ବୃଦ୍ଧି କରୁଅଛି ।

ମହାତ୍ମା ପିଟର ସ୍ୱପ୍ନ ଏବଂ ଜାଗରଣରେ ସାମ୍ରାଜ୍ୟର ଉନ୍ନତି କଳ୍ପନା କରୁଥିଲେ । ସେ ଅଡ଼ମ୍ବରପ୍ରିୟ ବା ବିଳାସପରାୟଣ ନ ଥିଲେ । ଏକ ହସ୍ତରେ ଜ୍ଞାନପ୍ରଦୀପ ଓ ଅପର ହସ୍ତରେ ଶାସନଦଣ୍ଡ ଧରି ସେ ରୁଷୀୟ ସାମ୍ରାଜ୍ୟର ଯେପରି ଉନ୍ନତିସାଧନ କରିଅଛନ୍ତି ତାହା ବର୍ଣ୍ଣନାତୀତ । ଏତେବଡ଼ ସାମ୍ରାଜ୍ୟର ଅଧିପତି ହୋଇ ସେ ନିଜକୁ ଅତି ସାମାନ୍ୟ ଲୋକ ମନେ କରୁଥିଲେ । ଜ୍ଞାନାଲୋକରେ ହୃଦୟ ଆଲୋକିତ ହେଲେ ମାନବ ସର୍ବଦା ନିର୍ଭୀକଚିତ୍ତରେ କାର୍ଯ୍ୟସାଧନ କରିପାରେ, ଏହା ତାହାଙ୍କ ଜୀବନର ପ୍ରଧାନ ନୀତି; ତେଣୁ ପ୍ରାଚୀନ ରୁଷୀୟ କବିମାନେ ଏହି ମହାନୁଭବ ବିଚକ୍ଷଣ ସମ୍ରାଟଙ୍କ ନାମ ଅମର ସଙ୍ଗୀତରେ ନିବଦ୍ଧ କରିଯାଇଅଛନ୍ତି ।

---

# ସାହିତ୍ୟପାଠ ।

---

## ଦ୍ୱିତୀୟ ଭାଗ ।

### ଦରବାର-ସଂଗୀତ ।



ସମ୍ରାଟ୍ ପଞ୍ଚମ ଜର୍ଜ ।

(ଅନୁବାଦ ।)

ରାଜେନ୍ଦ୍ରେ କର ରକ୍ଷା ହେ ଈଶ୍ୱରେ!
ରକ୍ଷା କର,
ଦୟାଳୁ ଉଦାର ଆମ୍ଭ ରାଜେନ୍ଦ୍ର,
ଚିରଜୀବୀ କର
ହେ ଈଶ୍ୱର! । ୧ ।

ଦେଶେ ଦେଶେ ନିତ — ଉଡ଼ୁ ବୈଜୟନ୍ତୀ
ତାହାଙ୍କର,
ଜୟ ତାଙ୍କ ଦାନ — ଯଶ ସୁଖ ମାନ
ଚିରରାଜପଣ
ହେ ଈଶ୍ୱର ! । ୧ ।

ତବ ଗନ୍ତାଘରୁ — ସେ ଦିବ୍ୟ ଭଣ୍ଡାରୁ
ଦିବ୍ୟବର
ବାଞ୍ଛା କର ଦାନ — ଲଭନ୍ତୁ ସମ୍ମାନ
ଅମ୍ଭ ନୃପବର
ପରସ୍ପର ! । ୩ ।

ରାଜ୍ୟବଶ୍ୟ ରାଜା, — ପାଳନ୍ତୁ ପରଜା
ନିରନ୍ତର ।
ଆମ୍ଭେ ପ୍ରଜାଗଣେ — ହେଉ ଏକମନେ
ତାଙ୍କ ଜୟଗାନେ
ତତ୍ପର । ୪ ।

---

## ଜୀବପ୍ରତି ଦୟା ।

ପ୍ରାୟ ଦ୍ୱିସହସ୍ରପଞ୍ଚଶତ ବର୍ଷ ପୂର୍ବେ ମହାତୀର୍ଥରୂପିଣୀ ବାରାଣସୀ ନଗରୀର ପଞ୍ଚଶତ କ୍ରୋଶ ଦୂରବର୍ତ୍ତୀ କପିଳବାସ୍ତୁନାମ୍ନୀ ନଗରୀରେ ଶୁଦ୍ଧୋଦନ ନାମକ ଜଣେ ନରପତି ରାଜପଣ କରୁଥିଲେ । ତାହାଙ୍କର ଗୌତମ ନାମରେ ଗୋଟିଏ ପୁତ୍ର ଥିଲା । ଗୌତମ ବାଲ୍ୟକାଳରୁ ଅତି ସାହସୀ ଏବଂ ଯୁଦ୍ଧପ୍ରିୟ ଥିଲେ । ଶୁଦ୍ଧୋଦନ ସ୍ୱୀୟ ସଦୃଶ ସଂଗ୍ରାମନିପୁଣ କରାଇବା ମାନସରେ ପୁତ୍ରକୁ ନାନାପ୍ରକାର ଶାରୀରିକ ବ୍ୟାୟାମ, ଧନୁର୍ବିଦ୍ୟା ଏବଂ ଅସ୍ତ୍ରଶସ୍ତ୍ରଚାଳନା ଶିକ୍ଷା ଦେଇଥିଲେ ।

ଗୌତମ ବାଲ୍ୟକାଳରୁ ଏପରି ଶାନ୍ତ, ଶିଷ୍ଟ ଓ ସୁଶୀଳ ଥିଲେ ଯେ, କେବଳ ପିତା କାହିଁକି, ଦେଶର ସମଗ୍ର ରାଜମଣ୍ଡଳୀ ତାହାଙ୍କ ପାଇଁ ନିଜ ନିଜକୁ ଅତିଶୟ




ଜୀବପ୍ରତି ଦୟା ।

ଗୌରବାନ୍ୱିତ ମନେକରୁଥିଲେ । ଦଣ୍ଡପାଣିରାଜାଙ୍କ ଯଶୋଧାରାନାମ୍ନୀ ଗୋଟିଏ ପରମସୁନ୍ଦରୀ କନ୍ୟାସଙ୍ଗରେ ତାଙ୍କର ଶୁଭପରିଣୟ ସମ୍ପାଦିତ ହୋଇଥିଲା । ଅଳ୍ପଦିନମଧ୍ୟରେ ତାଙ୍କର ଗୋଟିଏ ପୁତ୍ରସନ୍ତାନ ଲାଭହେଲା । ଫଳତଃ ଜୀବନକୁ ସର୍ବାଙ୍ଗୀନ ସୁଖମୟ କରିବା ନିମନ୍ତେ ଯାହାକିଛି ଆବଶ୍ୟକ ସେସମସ୍ତ ଗୌତମଙ୍କ ଭାଗ୍ୟରେ ଘଟିଥିଲା ।

ଗୌତମ ବାଲ୍ୟକାଳରୁ ଚିନ୍ତାଶୀଳ, ମଧୁରାଳାପୀ, ଦୟାର୍ଦ୍ରହୃଦୟ ଓ କ୍ଷମାଶୀଳ ଥିଲେ । ସେ ମୃଗୟାରୂପେ ଅରଣ୍ୟମଧ୍ୟରେ ପ୍ରବେଶକରି ଯେତେବେଳେ ମୃଗ ଲକ୍ଷ୍ୟ କରନ୍ତି, ସେତେବେଳେ ଅର୍ଦ୍ଧାକର୍ଷିତଧନୁହସ୍ତ ହୋଇ ଅଧିକାଂଶ ସମୟ ଭାବିବାକୁ ଲାଗନ୍ତି ଯେ, ଏହି ନିର୍ଦ୍ଦୋଷ ଓ ନିରୀହ ପ୍ରାଣୀଟିକୁ

କାହିଁକି ବଧ କରିବ! ଫଳତଃ ସାୟକଟି ତୂଣୀର ମଧ୍ୟରେ ପୁନଃ ସଂସ୍ଥାପନପୂର୍ବକ ଗୃହକୁ ଫେରିଆସନ୍ତି । ଅଶ୍ୱ ଦୌଡ଼ ସମୟରେ ଅଶ୍ୱ ଘର୍ମ୍ମାକ୍ତ ବା କ୍ଳାନ୍ତ ହେବାର ଦେଖିଲେ ପ୍ରାଣିପୀଡ଼ନ ଅପେକ୍ଷା ବରଂ ସ୍ୱୀୟ ପରାଜୟ ଶ୍ରେୟସ୍କର ମନେକରି ପୁନର୍ଧାବନରୁ ତାହାକୁ କ୍ଷାନ୍ତ କରନ୍ତି । ଦିନେ ତାଙ୍କର ସୁହୃଦ୍‌ବର ଦେବଦତ୍ତ ଆକାଶମାର୍ଗରେ ଉଡ଼ିଯାଉଥିବା ଦଳେ ରାଜହଂସ ମଧ୍ୟରୁ ଗୋଟିକୁ ଲକ୍ଷ୍ୟ କରି ଶର ନିକ୍ଷେପ କଲେ । ଶରବିଦ୍ଧ ପକ୍ଷୀଟି ରକ୍ତାକ୍ତ-କଳେବର ହୋଇ ଗୌତମଙ୍କ ପଦ ସନ୍ନିକଟରେ ପତିତ ହେଲା । ଗୌତମ ପକ୍ଷୀଟିକୁ ଏକ ହସ୍ତରେ ଧରି ଅନ୍ୟ ହସ୍ତରେ ଧୀରେ ଧୀରେ ଶରଟି ଉତ୍ପାଟନ କଲେ ଏବଂ କ୍ଷତସ୍ଥାନରେ ମର୍ଦ୍ଦିତ ଶୀତଳପଲ୍ଲବ ପ୍ରଲେପ ଦେଇ ତାହାକୁ ପୀଡ଼ାମୁକ୍ତ କରିବା-ବାର ଚେଷ୍ଟା କଲେ । ପକ୍ଷୀଟି କିଞ୍ଚିତ୍ ଆରୋଗ୍ୟ ଲାଭ କରିବାରୁ ଦେବଦତ୍ତ ତାହା ଉପରେ ନିଜର ସ୍ୱତ୍ୱ ସ୍ଥାପନ କଲେ, ମାତ୍ର ଗୌତମ ତାହାଙ୍କୁ ପକ୍ଷୀଟି ଦେଲେ ନାହିଁ; ଶେଷରେ ଦେବଦତ୍ତ ରାଜା ଶୁଦ୍ଧୋଦନଙ୍କ ନିକଟରେ ଅଭି-ଯୋଗ ଉପସ୍ଥାପନ କଲେ । ଗୌତମ ପ୍ରକାଶକଲେ, "ଦେବଦତ୍ତ ନିର୍ଦ୍ଦୟଭାବରେ ପକ୍ଷୀଟିର ପ୍ରାଣ ସଂହାର କରିବାକୁ ବସିଥିଲା, କିନ୍ତୁ ମୁଁ ତାହାର ପ୍ରାଣ ରକ୍ଷା କରିଅଛି ।" ରାଜା ତରୁଣପୁତ୍ରର ହୃଦୟରେ ଏପରି ଦୟାର୍ଦ୍ରଭାବ ଦେଖି ଏତେଦୂର ସନ୍ତୁଷ୍ଟ ହେଲେ ଯେ, ଦେବଦତ୍ତର ଆପତ୍ତି ଯୁକ୍ତିଯୁକ୍ତ ମନେ ନ କରି ପକ୍ଷୀଟିକୁ ଗୌତମଙ୍କୁ ପ୍ରଦାନ କଲେ । ବିବିଧ ଚେଷ୍ଟାରେ ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କଲାପରେ ଗୌତମ ସେହି ପକ୍ଷୀଟିକୁ ପ୍ରକୃତିର ବିଶାଳ ପ୍ରାଙ୍ଗଣରେ ସ୍ୱେଚ୍ଛାକ୍ରମେ ବିହାର କରିବା ନିମିତ୍ତ ଉନ୍ମୁକ୍ତ କରିଦେଲେ । ଦିନେ ବସନ୍ତସମ-ୟରେ ସୁମନୋହର ଉଦ୍ୟାନସମୂହ ଦେଖିବା ମାନସରେ ଗୌତମ ପିତାଙ୍କସହ ରାଜପ୍ରାସାଦରୁ ବହିର୍ଗତ ହେଲେ । ମାର୍ଗରେ ଅନନ୍ତନୀଳିମାମୟ ଗଗନତଳେ ସୁବାସିତ ପୁଷ୍ପୋଦ୍ୟାନ, ଶ୍ୟାମଳ ଦୂର୍ବାଦଳ ଏବଂ ଫଳଭାରାବନତ ବୃକ୍ଷର କମ-ନୀୟ କାନ୍ତି ଦେଖି ପରମପ୍ରୀତି ଅନୁଭବ କଲେ । ଗୋଟିଏ କୃଷକ କ୍ଷେତ୍ରେ ଭୂମି କର୍ଷଣ କରୁଥିଲା, ବଳୀବର୍ଦ୍ଦ ଦୁଇଟି ମଧ୍ୟରୁ ଗୋଟିଏ ଅତି ଦୁର୍ବଳ ଓ କ୍ଷତପୃଷ୍ଠ ଥିବାରୁ ଦ୍ରୁତଗତିରେ ଲାଙ୍ଗଳ ଟାଣିପାରୁ ନ ଥିଲା । ଦ୍ରୁତଗତି କରିବା ନିମିତ୍ତ

ଲୁଷକ ତାହାଙ୍କୁ ଏପରି ନିଷ୍ଠୁରଭାବରେ ପ୍ରହାର କରୁଥିଲା ଯେ, ଅବଶେଷରେ ସେ ଧରାଶାୟୀ ହେବାର ତାଙ୍କର ଦୃଷ୍ଟିଗୋଚର ହେଲା । ତତ୍ପରେ ଗୋଟିଏ ଶ୍ୟେନପକ୍ଷୀ ଗୋଟିଏ କପୋତକୁ ଏବଂ ଗୋଟିଏ କପୋତ କେତେଗୁଡ଼ିଏ ପତଙ୍ଗକୁ ଭକ୍ଷଣ କରୁଥିବାର ଦେଖି ଗୌତମ ଦୁଃଖିତ ଏବଂ ବିଷଣ୍ଣ ହୋଇ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ ।

ତଦନନ୍ତର ଗୋଟିଏ ଜରାକ୍ଳିଷ୍ଟ ବୃଦ୍ଧବ୍ୟକ୍ତି, ଜନୈକ ଶୀର୍ଣ୍ଣକାୟ ରୁଗ୍ଣ-ବ୍ୟକ୍ତି ଏବଂ ଗୋଟିଏ ମୃତବ୍ୟକ୍ତି କ୍ରମାନ୍ୱୟରେ ଦର୍ଶନକରି ସଂସାରର ଦାରୁଣ ଯନ୍ତ୍ରଣା ଗଭୀରରୂପେ ଅନୁଭବ କଲେ । ଶେଷରେ ବାଲାର୍କପ୍ରଭାସମ୍ପନ୍ନ, ଗୈରିକ-ବସନପରିଧାୟୀ, ପ୍ରଶାନ୍ତଚେତା ଜଣେ ସନ୍ନ୍ୟାସୀଙ୍କୁ ଦେଖି ରାଜସୁଖ ପରିତ୍ୟାଗ ପୂର୍ବକ ସ୍ୱୟଂ ସନ୍ନ୍ୟାସିବେଶରେ ଅରଣ୍ୟକୁ ପ୍ରସ୍ଥାନ କଲେ । ସେଠାରେ ସାଂସାରିକ ପାପତାପରୁ ନିଷ୍କୃତି ପାଇବା ନିମନ୍ତେ ଗଭୀର ଚିନ୍ତାରେ ନିମଗ୍ନ ହୋଇ ଅବ-ଶେଷରେ ଜ୍ଞାନ ଲାଭକଲେ । ପରେ ଦେଶ ବିଦେଶରେ ସେ ଏହି ଜ୍ଞାନାଲୋକ ବିସ୍ତାର କରିଥିଲେ ତାହା ତାଙ୍କ ଜୀବନଚରିତରେ ବିଶଦଭାବରେ ବର୍ଣ୍ଣିତ ହୋଇ-ଅଛି । ଗୌତମଙ୍କ ମତରେ ମାନବ ଯେ କେବଳ ସତ୍ ଓ ସଦୟ ବ୍ୟବହାରର ପାତ୍ର ତାହା ନୁହେଁ, ପ୍ରାଣୀମାତ୍ରେ ଦୟା ଓ ଯତ୍ନର ପାତ୍ର ଅଟନ୍ତି । ଯଦି ଲୋକମାନେ ବୁଦ୍ଧଙ୍କର ଶିକ୍ଷାନୁସାରେ କାର୍ଯ୍ୟ କରନ୍ତେ ତାହାହେଲେ ପୃଥିବୀର ପାପ, ତାପ, ଦୁଃଖ ଓ କଷ୍ଟ ବହୁପରିମାଣରେ ଲଘୁ ହୁଅନ୍ତା ଏଥିରେ ସନ୍ଦେହ ନାହିଁ ।

ପ୍ରଶ୍ନ କଲେ ଅଧିକାଂଶ ଲୋକ ଉତ୍ତର କରିବେ ଯେ, ବୁଦ୍ଧଙ୍କ ଉପ-ଦେଶ ଅତି ମହତ୍ ଥିଲା; ଏହା କେବଳ ବାକ୍ୟରେ ପର୍ଯ୍ୟବସିତ । କାର୍ଯ୍ୟତଃ ପ୍ରାଣୀପ୍ରତି ସଦୟ ଓ ଉଦାର ବ୍ୟବହାର କରିବା କାହାରିକୁ ଦେଖାଯାଏ ନାହିଁ । ଭାରତବର୍ଷରେ ଅନେକ ଜାତି ଅଛନ୍ତି, ଯେଉଁମାନେ ଖାଦ୍ୟ ନିମିତ୍ତ ପ୍ରାଣିବଧକୁ ମହାପାପ ବୋଲି ମନେକରନ୍ତି । ଏହା ଅବଶ୍ୟ ଗୋଟିଏ ଉଦାର ନୀତି । ପ୍ରାଣିବଧ ନ କଲେ ଯେ ପ୍ରାଣୀମାନଙ୍କ ପ୍ରତି ନିଷ୍ଠୁର ବ୍ୟବହାର କରା ନ ଗଲା ତାହା ବୋଲାଯାଇ ନ ପାରେ । ଅନ୍ୟାନ୍ୟ ଅନେକ ଉପାୟରେ ମଧ୍ୟ ପ୍ରାଣୀମାନଙ୍କ ପ୍ରତି ନିଷ୍ଠୁର ବ୍ୟବହାର କରାଯାଇଥାଏ । କ୍ଷୁଦ୍ର ବାଳକମାନେ

ଏବଂ ଅନେକ ସମୟରେ ବୟଃପ୍ରାପ୍ତ ବାଳକମାନେ ମଧ୍ୟ ପକ୍ଷୀମାନଙ୍କର ନୀଡ଼ ଅନୁସନ୍ଧାନ କରି ସେମାନଙ୍କ ଅଣ୍ଡାବଳୀ ଅପହରଣରେ ବିଶେଷ ଆନନ୍ଦ ଭୋଗ କରନ୍ତି । ଏହା ବଡ଼ ନିଷ୍ଠୁର କାର୍ଯ୍ୟ । ତୁମ୍ଭମାନଙ୍କର ପିତାମାତା ତୁମ୍ଭଙ୍କୁ ଯେପରି ଭଲପାନ୍ତି, ପକ୍ଷୀମାନେ ସେମାନଙ୍କର ଶାବକମାନଙ୍କୁ ମଧ୍ୟ ସେହିପରି ସ୍ନେହ କରନ୍ତି । ଜଣେ ଦସ୍ୟୁ ତୁମ୍ଭଙ୍କୁ ବଳୀତ୍କାରେ ତୁମ୍ଭ ପିତାମାତାଙ୍କଠାରୁ ବିଚ୍ଛିନ୍ନ କରି ନେଲେ ସେମାନେ ଯେପରି ଦୁଃଖିତ ଓ ମର୍ମାହତ ହେବେ, ତୋଟିଏ ବାଳକ ପକ୍ଷୀର ଅଣ୍ଡା କିମ୍ବା ଶାବକ ହରଣ କଲେ ପକ୍ଷୀଟି ସେହିପରି ମର୍ମନ୍ତୁଦ ଯନ୍ତ୍ରଣା ଅନୁଭବ କରିବ, ଏଥିରେ ସନ୍ଦେହ ନାହିଁ । ଆଉ ଅନେକ ବାଳକ ଅଛନ୍ତି, ସେମାନେ ପକ୍ଷୀ କିମ୍ବା ଭେକମାନଙ୍କ ଉପରେ ଲୋଷ୍ଟ୍ରନିକ୍ଷେପ କରି-ବାରେ ଅପାର ଆନନ୍ଦ ଉପଲବ୍ଧି କରନ୍ତି; ପୁନଶ୍ଚ କୌଣସି କୌଣସି ବାଳକ ଏହି ପକ୍ଷୀମାନଙ୍କର ପକ୍ଷ, ପାଦ ପ୍ରଭୃତି ମୋଡ଼ି ସେମାନଙ୍କୁ ବଧ କରନ୍ତି । ଏପ୍ରକାର ଆମୋଦ ଅତଏବ କୁତ୍ସିତ ଓ ଘୃଣିତ । ପ୍ରତ୍ୟେକ ବାଳକର ମନେ ରଖିବା ଉଚିତ ଯେ, ତାହାର ନିଜ ଗୋଡ଼ ଭାଙ୍ଗିଦେଲେ ତାକୁ ଯେପରି କଷ୍ଟ ହେବ, ପକ୍ଷୀର ଗୋଡ଼ ମୋଡ଼ିଦେଲେ ତାକୁ ସେହିପରି କଷ୍ଟ ହେବ । କେହି କେହି ଘୋଡ଼ା ବଳଦ ପ୍ରଭୃତି ପଶୁମାନଙ୍କୁ ଅତିରିକ୍ତ ପରିଶ୍ରମ କରାନ୍ତି, ଶଗଡ଼ିଆ ଓ ହଳିଆମାନେ ବଳଦମାନଙ୍କୁ ଶୀଘ୍ର ଚାଲିବା କିମ୍ବା ଦୌଡ଼ିବା ସକାଶେ ସେମାନ-ଙ୍କର ଲାଞ୍ଜ ମୋଡ଼ି ପ୍ରାୟ ଭାଙ୍ଗିଦିଅନ୍ତି । ଆଉ ମଧ୍ୟ ବେଳେ ବେଳେ ଗାଡ଼ି କିମ୍ବା ଶଗଡ଼ମାନଙ୍କରେ ଏତେ ବେଶୀ ବୋଝାଇ ହୋଇଥାଏ ଯେ, ଯଦି ପ୍ରାଣୀମାନେ ତାହା ଟାଣିବାରେ ସମ୍ପୂର୍ଣ୍ଣ ଅକ୍ଷମ ହୁଅନ୍ତି ତେବେ ତେବେଳେ ଯାନ-ଚାଳକମାନେ ସେମାନଙ୍କୁ ନିଷ୍ଠୁରଭାବରେ ପ୍ରହାର କରନ୍ତି । ଏ ଦେଶରେ ଏପରି କେତେ ଲୋକ ଅଛନ୍ତି ଯେ, ସେମାନେ ପ୍ରାଜନଦଣ୍ଡର ଅଗ୍ରଭାଗରେ ଗୋଟିଏ ଲୌହକଣ୍ଟକ ବନ୍ଧ କରି ରଖିଥାନ୍ତି; ଯେତେବେଳେ ଅଶ୍ୱ, ବଳଦ ବା ମହିଷ-ମାନେ ଭୂମିକର୍ଷଣ ବା ଯାନଚାଳନରେ ଅସମର୍ଥ ହୁଅନ୍ତି ସେତେବେଳେ ସେହି ଦଣ୍ଡାଗ୍ରସ୍ଥିତ ଲୌହକଣ୍ଟକରେ ସେମାନଙ୍କର ଜାନୁସନ୍ଧି ବିଦ୍ଧ କରିଦିଅନ୍ତି । ଏସବୁ ପ୍ରାଣୀମାନଙ୍କ ପ୍ରତି କି ନିଷ୍ଠୁର ବ୍ୟବହାର ନୁହେଁ ?

ସମସ୍ତ ପ୍ରାଣିଜଗତ ପ୍ରତି ସଦୟ ହେବା ମହତ୍ତ୍ୱର ପୂର୍ଣ୍ଣ ଅଟେ । ଈଶ୍ୱର ସକଳ ପ୍ରାଣୀ ସୃଷ୍ଟି କରିଅଛନ୍ତି, ସେମାନଙ୍କ ପ୍ରତି ନିର୍ଦ୍ଦୟ ବ୍ୟବହାର କଲେ ତାହାଙ୍କ ନିଶ୍ଚୟ କୁପିତ ହେବେ । ଈଶ୍ୱରପ୍ରେମ ସାର୍ବଜନୀନ ପ୍ରେମର ନାମାନ୍ତର ମାତ୍ର, ଏହା ଯେଉଁ ଲୋକର ବର୍ତ୍ତେ ସେ ଈଶ୍ୱରସୃଷ୍ଟ ସକଳ ପ୍ରାଣୀଙ୍କୁ ସ୍ନେହ ନ କରି ଏବଂ ସେମାନଙ୍କ କଷ୍ଟରୁ ମୁକ୍ତ କରିବା ନିମିତ୍ତ ଯଥାସାଧ୍ୟ ଚେଷ୍ଟା ନ କରି ରହି ପାରିବ ନାହିଁ । ରୁଗ୍ଣ ପଶୁମାନଙ୍କ ଚିକିତ୍ସା ନିମନ୍ତେ ବହୁ ହୃଦୟବାନ୍ ବ୍ୟକ୍ତି ଭାରତଖଣ୍ଡର ଅନେକ ସ୍ଥଳେ ପଶୁଚିକିତ୍ସାଳୟ ନିର୍ମାଣ କରାଇଦେଇ ସାଧାରଣଙ୍କର ଧନ୍ୟବାଦାର୍ହ ହୋଇଅଛନ୍ତି । ପ୍ରାଣୀପ୍ରତି ସଦୟ ବ୍ୟବହାର କରିବା ବିଷୟରେ ଜୈନମାନେ ପୃଥିବୀରେ ସର୍ବଶ୍ରେଷ୍ଠ ପ୍ରଶଂସନୀୟ ଅଟନ୍ତି ।

ଜଗତରେ ଦୟାଶୀଳଲୋକର ପୂଜା ଏବଂ ନିର୍ଦ୍ଦୟଲୋକର ନିନ୍ଦାବାଦ ନିତ୍ୟ ପ୍ରତ୍ୟକ୍ଷୀଭୂତ ହୁଏ । ଯେଉଁ ଲୋକ ପ୍ରତ୍ୟହ ଶୟନ ପୂର୍ବରୁ ଉତ୍ତମରୂପେ ପ୍ରଣିଧାନ କରି ଦେଖେ ଯେ, ସେ ଦିନ ସେ କୌଣସି ପ୍ରାଣୀକୁ କଷ୍ଟ ଦେଇ ନାହିଁ, ତେବେ ସେ ଭାଗ୍ୟବାନ୍ । ଯେଉଁ ଲୋକ ଭାବି ଦେଖେ ଯେ, ସେ ସେହି ଦିନ କୌଣସି ପ୍ରାଣୀକୁ କଷ୍ଟରୁ ଉଦ୍ଧାର କରି ଜଗତର କଷ୍ଟ କିଞ୍ଚିତ୍ ଲଘୁ କରି-ଅଛି, ସେ ଅଧିକତର ଭାଗ୍ୟବାନ୍ ଓ ପୁଣ୍ୟବାନ୍ ।

---

## ରାଣୀ ଅହଲ୍ୟାବାଇ ।

ଜଗତରେ କେବଳ ଦୟା, କ୍ଷମା, ପ୍ରେମ, ଭକ୍ତି ଓ ବାତ୍ସଲ୍ୟ ଗୁଣରେ ଯେ ନାରୀଜାତି ପୁରୁଷମାନଙ୍କ ଅପେକ୍ଷା ଉତ୍କର୍ଷ ଦେଖାଇଅଛନ୍ତି ତାହା ନୁହେ; ଅସାଧାରଣ ପାଣ୍ଡିତ୍ୟ, ଧୀମତ୍ତା, ଶୌର୍ଯ୍ୟ ଏବଂ ସୌଜନ୍ୟରେ ମଧ୍ୟ ସେମାନେ ପୁରୁଷଜାତିକୁ ବଳିପଡ଼ିଅଛନ୍ତି । ବ୍ରହ୍ମଜ୍ଞା ମୈତ୍ରେୟୀ, ବିଦୁଷୀ ଲୀଳାବତୀ, ବୀର୍ଯ୍ୟ-ବତୀ ଦୁର୍ଗାବତୀ ଏବଂ ସର୍ବଗୁଣାଲଙ୍କୃତା ମହାରାଣୀ ଭିକ୍ଟୋରିୟାପ୍ରମୁଖ ବିଭିନ୍ନ

ଯୁଗର ନାରୀଗଣ ତହିଁର ଦୃଷ୍ଟାନ୍ତସ୍ଥଳ । ଏଠାରେ ସେହିପରି ଜଣେ ଆଦର୍ଶ-ନାରୀଙ୍କର ଜୀବନବୃତ୍ତାନ୍ତ ଉଲ୍ଲିଖିତ ହେଉଅଛି ।

ପ୍ରତିଦିନ ଆମ୍ଭେମାନେ ବହୁଲୋକଙ୍କର ମୃତ୍ୟୁସଂବାଦ ଶୁଣୁଅଛୁଁ, କିନ୍ତୁ ସେଥିପାଇଁ କେବେ ମନରେ କେତେ ଦୁଃଖ ହୁଏ ନାହିଁ, ହେଲେ ମଧ୍ୟ ଅଧିକ-କାଳସ୍ଥାୟୀ ହୁଏ ନାହିଁ । ମାତ୍ର ଜଣଜଣଙ୍କ ମୃତ୍ୟୁରେ ସମଗ୍ରଦେଶ କାହିଁକି ହାହାକାରମୟ ହୋଇଯାଏ? ମହାରାଣୀ ଭିକ୍ଟୋରିୟାଙ୍କର ପରଲୋକଗମନରେ କାହିଁକି ପୃଥିବୀବ୍ୟାପୀ ଶୋକୋଚ୍ଛ୍ୱାସ ଅଭ୍ୟୁତ୍ଥିତ? ପ୍ରାୟ ଶତାଧିକବର୍ଷ ପୂର୍ବରୁ ରାଣୀ ଅହଲ୍ୟାବାଈଙ୍କର ମୃତ୍ୟୁ ହେଲାଣି, ଆଜି କାହିଁକି ତାହାଙ୍କର ପବିତ୍ରନାମ ସ୍ମୃତିପଥାରୂଢ଼ ହେଉଛି? ଅବଶ୍ୟ ଏମାନଙ୍କର କିଛି ସ୍ମରଣୀୟ ଗୁଣ ଅଛି ଯଦ୍ଦ୍ୱାରା ସମସ୍ତେ ବିମୁଗ୍ଧ ଏବଂ ଉପକୃତ । ତେଣୁ ସେମାନଙ୍କର ବିୟୋଗ ଲୋକ-ମାନଙ୍କର ଅସହ୍ୟ ହୋଇପଡ଼ିଅଛି ।

ରାଣୀ ଅହଲ୍ୟାବାଈଙ୍କର ଯଶୋଗୁଣ ବର୍ତ୍ତମାନ ଭାରତବିଖ୍ୟାତ । ମହା-ରାଷ୍ଟ୍ର ଦେଶରେ ନାନାଶ୍ରେଣୀର ଲୋକଙ୍କ ମୁଖରେ ତାହାଙ୍କ ନାମସହ ଯଶୋ-ଗାଥା ଅଦ୍ୟାପି ଗୀତ ହେଉଅଛି । ତାହାଙ୍କର କର୍ମକୁଶଳତା ଏବଂ ସୁଖ୍ୟାତିର ବର୍ଣ୍ଣନା ପୂର୍ବରୁ ବଂଶର ସ୍ଥୂଳପରିଚୟ ପ୍ରଦାନ ଆବଶ୍ୟକ । ମହାରାଷ୍ଟ୍ର ଦେଶରେ ପେଶୋବା-ଶାସନ ନିର୍ଜୀବ ଓ ଅନ୍ତଃସାରଶୂନ୍ୟ ହୋଇପଡ଼ିବାରୁ ରାଜ୍ୟରେ ଯେତେବେଳେ ନାନା ବିପ୍ଳବ ସଂଘଟିତ ହେଲା, ସେତେବେଳେ ହୋଲ୍କାର-ବଂଶଜ ମରହଟ୍ଟାମାନେ ସ୍ୱୀୟ ପ୍ରଭାବ ବିସ୍ତାର କରିଥିଲେ । ପୁନା ପ୍ରଦେଶାନ୍ତ-ର୍ଗତ ନୀରାନଦୀ ତୀରବର୍ତ୍ତୀ ହୋଲ୍ ନାମକ ପଲ୍ଲୀରେ ସେମାନଙ୍କର ଆଦିମ ଅଧି-ବାସ ଥିବାରୁ ସେମାନେ ହୋଲ୍କାର ନାମରେ ଅଭିଖ୍ୟାତ । ଏହି ବଂଶର ସମୁଜ୍ଜ୍ୱଳ ମଣି ମଲ୍ହର ରାଓ ସପ୍ତଦଶ ଶତାବ୍ଦୀରେ ଜନ୍ମଗ୍ରହଣ କରିଥିଲେ । ବାଲ୍ୟକାଳରେ ସେ ମାତୁଳଙ୍କର ମେଷପାଳକ ଥିଲେ । କଥିତ ଅଛି ଦିନେ ସେ ଗୋଟିଏ ବୃକ୍ଷମୂଳରେ ଶୋଇଅଛନ୍ତି, ଏମନ୍ତ ସମୟରେ ଗୋଟିଏ ଅଜଗର ସର୍ପ ସ୍ୱୀୟ ବିସ୍ତୃତ ଫଣାକୁ ଛତ୍ରପ୍ରାୟ ତାହାଙ୍କ ମସ୍ତକ

ଉପରେ ଉତ୍ତୋଳନ କରି ରଖିଅଛି । ମଲ୍ହାର ଏହି ଶୁଭଲକ୍ଷଣ ଦର୍ଶନରେ ଆଶାନ୍ୱିତ ଏବଂ ରାଜ୍ୟସେବକତା ଅନ୍ୱେଷଣରେ ଯତ୍ନବାନ୍ ହୋଇ ସିଦ୍ଧକାମ ହେଲେ ଏବଂ କାଳକ୍ରମେ ନିଜ ଅଧ୍ୟବସାୟ ଏବଂ ବାହୁବଳରେ ମାଳବର ଅଧିପତ୍ୟ ଲାଭକଲେ । ଅହଲ୍ୟାବାଈ ଏହି ଅଭ୍ୟୋନ୍ନତିଶୀଳ ମଲ୍ହାର ରାଓଙ୍କର ପୁତ୍ରବଧୂ ।

ମାଳବର ପ୍ରଥମ ଅଧିପତି ଉକ୍ତ ମଲ୍ହାରଙ୍କର ଏକମାତ୍ର ପୁତ୍ର ଖଣ୍ଡେରାଓ ସାଧ୍ୱୀ ଅହଲ୍ୟାବାଈଙ୍କର ପାଣିଗ୍ରହଣ କରିଥିଲେ । କିନ୍ତୁ ଅହଲ୍ୟାଦେବୀ ଅଧିକ-କାଳ ପତିଙ୍କର ସହଚାରିଣୀ ହୋଇ ପାରି ନ ଥିଲେ । ପିତାଙ୍କର ନିୟୋଗକ୍ରମେ ତାହାଙ୍କର ସ୍ୱାମୀ କୌଣସି ଯୁଦ୍ଧକୁ ସେନାପତି ହୋଇ ଯାଇ ମାର୍ଗମଧ୍ୟରେ ବଜ୍ରନିର୍ଘାତରେ ବହୁଜନବାଞ୍ଛିତ ପ୍ରାଣ ହରାଇଥିଲେ । ଏଥିରେ ଏକାପତ୍ୟ ବୃଦ୍ଧ ମଲ୍ହାର ଏବଂ ପତିପ୍ରାଣା ଅହଲ୍ୟାଦେବୀଙ୍କ ମନରେ ଯେ କିପରି ଦାରୁଣ କଷ୍ଟ ଜନ୍ମିଥିଲା ତାହା ସହଜରେ ଅନୁମେୟ । ତେତେବେଳେ ଅହଲ୍ୟାଗର୍ଭଜାତ ମାଲୀରାଓ ମାତା ଓ ପିତାମହଙ୍କର ଏକମାତ୍ର ସନ୍ତାନ । ସେ ପୁତ୍ର ପୁଣି ସ୍ଥୂଳ-ବୁଦ୍ଧି, ଅକର୍ମଣ୍ୟ ଏବଂ ନାନା କୁକର୍ମରତ ଥିଲେ । ପୁତ୍ରର ମନାଚରଣ ଅହଲ୍ୟା-ଦେବୀଙ୍କର ଦ୍ୱିତୀୟ ଦୁଃଖ । ସ୍ନେହମୟୀ ଜନନୀ ଏହି ଚିନ୍ତାରେ କ୍ରମଶଃ ଶୀର୍ଣ୍ଣ ହେଉଥିଲେହେଁ କୁପୁତ୍ର ପ୍ରତି ବିମୁଖ ନ ହୋଇ ତାହାର ସୁବୁଦ୍ଧି ନିମିତ୍ତ ପ୍ରାଣ-ପଣେ ଯତ୍ନ କରୁଥିଲେ । କିନ୍ତୁ ସେସମସ୍ତ ଯତ୍ନ ଊଷରରେ ବୀଜବପନ ପ୍ରାୟ ନିଷ୍ଫଳ ହୋଇଥିଲା । ଏଥିଉତ୍ତାରେ ଷଟ୍‌ସପ୍ତତିବର୍ଷ ବୟସରେ ବୃଦ୍ଧରାଜାଙ୍କର ମୃତ୍ୟୁ ହେବାରୁ ମାଲୀ ତାହାଙ୍କର ଏକମାତ୍ର ଉତ୍ତରାଧିକାରୀ ହେଲେ । ଦାପ୍ତିନ-ପୂର୍ଣ୍ଣ ରାଜପଦଲାଭରେ ଯୁବା ତାହାଙ୍କର ସେହି ଚାଞ୍ଚଲ୍ୟ ଏବଂ କ୍ଷିପ୍ତତା ଶାନ୍ତ ନ ହୋଇ ବରଂ ବୃଦ୍ଧିପ୍ରାପ୍ତ ହେଲା ଏବଂ ଏହି ଅତିବୃଦ୍ଧି ଅଚିରେ ଅକାଳମୃତ୍ୟୁରେ ପରିଣତ ହେଲା । ବର୍ତ୍ତମାନ ରାଜମାତା ଅହଲ୍ୟା ଦ୍ୱିପ୍ରକାର ମହାଦୁଃଖରେ ଅବସନ୍ନା, ତାହାଙ୍କର ଚତୁର୍ଦ୍ଦିଗ ମହାସଙ୍କଟସଙ୍କୁଳ । ବ୍ୟଥିତା ତାହାଙ୍କୁ କାହିଁକି ଏପରି ସହାୟସମ୍ବଳଶୂନ୍ୟ କଲେ ତାହା ନିର୍ଣ୍ଣୟ କରିବା ମାନବବୁଦ୍ଧିର ସାଧ୍ୟ ନୁହେ । ବୋଧହୁଏ ଦୟାବତୀ ଅହଲ୍ୟାଦେବୀଙ୍କ କୋମଳ ହସ୍ତରେ ରାଜ୍ୟଶାସନ-

ଙ୍କର ଅର୍ପଣ କଲେ ତାଙ୍କର ଅଭିପ୍ରେତ ଥିଲା । ଜଗତର କର୍ତ୍ତା ଈଶ୍ୱର ଯାହାଙ୍କର ସହାୟ, ତାହାଙ୍କର ଅନ୍ୟ ସାହାଯ୍ୟରେ ପ୍ରୟୋଜନ କଣ ? ସେଥିପାଇଁ ତେଜସ୍ୱିନୀ ଅହଲ୍ୟାବାଈ ଏପରି ସଂକଟରେ ପଡି ସୁଦ୍ଧା କିଞ୍ଚିନ୍ମାତ୍ର ଭୀତା ଏବଂ ଅଧୀରା ନ ହୋଇ ପ୍ରଜାମାନଙ୍କର ମଙ୍ଗଳକାମନାପୂର୍ବକ ରାଜ୍ୟଭାର ଗ୍ରହଣ କରିବାକୁ ପ୍ରସ୍ତୁତ ହୋଇଥିଲେ । ସେ ଅନ୍ୟ ରାଜପୁରୁଷର ଅପେକ୍ଷା ନ କରି ଏକମାତ୍ର ସେନାପତି ତୁକାଜୀରାଓଙ୍କୁ ଘେନି ତିରିଶବର୍ଷକାଳ କିପ୍ରକାରେ ରାଜ୍ୟ ଶାସନ କରିଥିଲେ ତାହା ଭାବିଲେ ବିସ୍ମିତ ହେବାକୁ ହୁଏ ।

ରାଜକାର୍ଯ୍ୟ ପରିଚାଳନାରେ ରାଣୀ ଅହଲ୍ୟାଙ୍କର ପ୍ରଶଂସନୀୟ ପଟୁତା ଥିଲା । ସେ ପ୍ରତିଦିନ ନିର୍ଦ୍ଦିଷ୍ଟ ସମୟରେ ଧର୍ମାଧିକରଣକୁ ଆସି ବିଚାରାସନ ଗ୍ରହଣପୂର୍ବକ ନ୍ୟାୟ-ବିଚାର କରୁଥିଲେ । ଅର୍ଥୀ ପ୍ରତ୍ୟର୍ଥୀଙ୍କର ବ୍ୟବହାର ନିଜେ ଆମୂଳ ଶ୍ରବଣ କରି ତହିଁର ଯଥୋଚିତ ପ୍ରତିବିଧାନରେ ତତ୍ପର ହେଉଥିଲେ । ଧନାଢ୍ୟ ବା ବଳବାନ୍ ପ୍ରତି ଶ୍ରଦ୍ଧା ପ୍ରଦର୍ଶନ ଏବଂ ନିର୍ଦ୍ଧନ ବା ଦୁର୍ବଳ ପ୍ରତି ଅନାସ୍ଥା ପ୍ରଦର୍ଶନ ତାହାଙ୍କ ଶାସନନୀତିର ଅନୁମୋଦିତ ନ ଥିଲା । ଅତିରିକ୍ତ କରଭାରରୁ ପ୍ରଜାମାନଙ୍କୁ ଅବ୍ୟାହତି ପ୍ରଦାନ ଏବଂ କୃଷୀବଳମାନଙ୍କର ସମ୍ପତ୍ତିରକ୍ଷା ଓ ଉନ୍ନତି ପ୍ରତି ତାହାଙ୍କର ତୀକ୍ଷ୍ଣଦୃଷ୍ଟି ଥିଲା । ରାଜ୍ୟ ମଧ୍ୟରେ କୂପ ଜଳାଶୟାଦି ଖନନ ଏବଂ ରାଜମାର୍ଗ, ମନ୍ଦିର, ପାନ୍ଥଶାଳାଦି ନିର୍ମାଣ ଦ୍ୱାରା ଜନସାଧାରଣଙ୍କର ହିତସାଧନ ପାଇଁ ସେ ସର୍ବଦା ଉତ୍ସୁକା ଥିଲେ । ଶୁଦ୍ଧସ୍ୱଭାବା ଅହଲ୍ୟାଦେବୀ ଦୁଶ୍ଚରିତ୍ର ଅଯୋଗ୍ୟ କର୍ମଚାରୀଙ୍କ ଦ୍ୱାରା ନିଜ ନ୍ୟାୟପରଶାସନ ଦୂଷିତ ହୋଇଯିବା ଆଶଙ୍କାରେ ନିଜେ ନିରପେକ୍ଷଭାବରେ ଉପଯୁକ୍ତ ଲୋକ ନିର୍ବାଚନ କରି ନିଯୁକ୍ତ କରୁଥିଲେ । କାହାରି ତୋଷାମୋଦ ବା ଚାଟୂକ୍ତିରେ କର୍ଣ୍ଣପାତ କରୁ ନ ଥିଲେ । ଫଳତଃ ଅକର୍ମଣ୍ୟ ଚାଟୁକାରମାନେ ତାହାଙ୍କ ଶାସନରେ ହତାଶ ହୋଇପଡ଼ିଲେ । ରାଣୀ ଏଣେ ସ୍ୱରାଜ୍ୟସ୍ଥ ପ୍ରଜାମାନଙ୍କର ସୁଖଶାନ୍ତି ବର୍ଦ୍ଧନରେ ସମଧିକ ଯତ୍ନବତୀ ଥାଇ ସୁଦ୍ଧା ସୀମାନ୍ତବର୍ତ୍ତୀ ରାଜ୍ୟସହିତ ସଖ୍ୟସ୍ଥାପନରେ ତ୍ରୁଟି କରୁ ନ ଥିଲେ । ସେ ତୁକାଜୀ ରାଓଙ୍କୁ ଦାକ୍ଷିଣାତ୍ୟର କାର୍ଯ୍ୟଭାର ପ୍ରଦାନ କରି ନିଜେ ଉତ୍ତରସ୍ଥ ରାଜ୍ୟସମୂହର ତତ୍ତ୍ୱାବଧାନ ଏବଂ କରଦରାଜ୍ୟମାନଙ୍କର କର

ଗ୍ରହଣର ଭାର ବହନ କରୁଥିଲେ । ତୁକାଜୀ କେବେ ଉତ୍ତର ପ୍ରଦେଶକୁ ପରି-ଦର୍ଶନାର୍ଥ ଯାଉଥିଲେ ରାଣୀ ଏକା ମାଳବ ସହିତ ସମଗ୍ର ଦାକ୍ଷିଣାତ୍ୟର ରାଜକାର୍ଯ୍ୟ ସ୍ୱତନ୍ତ୍ରରୂପେ ପରିଚାଳନ କରୁଥିଲେ । ରାଜକୋଷର ପର୍ଯ୍ୟବେକ୍ଷଣ ଏବଂ ଅପବ୍ୟୟ ନିର୍ଦ୍ଧାରଣର ଯଥାବିଧି ରକ୍ଷା ତାଙ୍କର ହସ୍ତରେ ନ୍ୟସ୍ତ ଥିଲା । ସେ କୌଣସି ଗୁରୁତର କାର୍ଯ୍ୟଭାର ମନ୍ତ୍ରୀ ବା ଅନ୍ୟକର୍ମଚାରୀଙ୍କ ହସ୍ତରେ ଅର୍ପଣ କରି ନିଶ୍ଚିନ୍ତ ରହୁ ନ ଥିଲେ । ସେଥିରେ ସୁବିଚାର ହୋଇଅଛି କି ନାହିଁ ତାହା ସଦୟ ଏବଂ ପ୍ରସନ୍ନ ଭାବରେ ବୁଝୁଥିଲେ । ଫଳତଃ ପ୍ରଜାବତ୍ସଳା ଅହଲ୍ୟା ପ୍ରଜାମାନଙ୍କର ସର୍ବବିଧ ମଙ୍ଗଳସମ୍ପାଦନ ଦ୍ୱାରା ଜନ୍ମକାରିଣୀ ନ ଥିଲେହେଁ ଜନନୀପଦବାଚ୍ୟା ଥିଲେ ।

କଥିତ ଅଛି ରାଣୀ ଯେତେବେଳେ ରାଜ୍ୟଭାର ସ୍ୱୟଂ ଗ୍ରହଣ କରିବାକୁ ବସିଲେ, ସେତେବେଳେ ତାହାଙ୍କର ପୁରୋହିତପ୍ରମୁଖ କତିପୟ ବ୍ୟକ୍ତି ନିଜ ନିଜ ଅଭୀଷ୍ଟସାଧନ ଉଦ୍ଦେଶ୍ୟରେ ନାନାଆପତ୍ତି ପ୍ରଦର୍ଶନପୂର୍ବକ ତାହାଙ୍କୁ ପୋଷ୍ୟ-ପୁତ୍ର ଗ୍ରହଣ କରିବାକୁ ପ୍ରବର୍ତ୍ତାଇଥିଲେ । କିନ୍ତୁ ପ୍ରଜ୍ଞାବତୀ ଅହଲ୍ୟାଦେବୀ ସେମାନ-ଙ୍କର ଦୁରଭିସନ୍ଧି ବୁଝିପାରି ଏବଂ ପୋଷ୍ୟପୁତ୍ରଗ୍ରହଣର କୌଣସି ପ୍ରୟୋଜନ ନ ଦେଖି ନିର୍ଭୀକଚିତ୍ତରେ ସୁଯୁକ୍ତିମୂଳକ ଉତ୍ତରପ୍ରଦାନଦ୍ୱାରା ସେମାନଙ୍କୁ ଉପ-ଯୁକ୍ତ ଶିକ୍ଷା ଦେଇଥିଲେ । ତଦାନୀନ୍ତନ ମହାରାଷ୍ଟ୍ରପତି ରାଘବରାଓ ମଧ୍ୟ ଏ ବିଷୟରେ ହସ୍ତକ୍ଷେପ କରି ସୁଦ୍ଧା ସଫଳକାମ ହୋଇ ପାରି ନ ଥିଲେ । ସେ ରାଣୀଙ୍କର ତେଜସ୍ୱୀ ବାକ୍ୟ ଶ୍ରବଣରେ ସାତିଶୟ କ୍ରୁଦ୍ଧ ହୋଇ ତାହାଙ୍କ ବିପକ୍ଷରେ ଯୁଦ୍ଧ ଘୋଷଣା କଲେ । ରାଣୀ ମଧ୍ୟ ଯୁଦ୍ଧ ନିବାରଣାର୍ଥ ଉପଯୁକ୍ତ ଦୃଢ଼ୋତ୍ତର ଦେଇ ଯୁଦ୍ଧସଜ୍ଜାରୁ ନିବୃତ୍ତ ହୋଇ ନ ଥିଲେ । ସୌଭାଗ୍ୟବଶତଃ ଯୁଦ୍ଧ ହୋଇ ନ ଥିଲା, ତଥାପି ଅହଲ୍ୟାଙ୍କର ଅସାଧାରଣ ସାହସ ଦର୍ଶନରେ ତତ୍କାଳୀନ ଲୋକମାନେ ବିସ୍ମୟାପନ୍ନ ହୋଇଥିଲେ । ତୁକାଜୀଙ୍କ ସାହାଯ୍ୟରୁ ରାଜତ୍ୱକାଳ-ମଧ୍ୟରେ ତାହାଙ୍କୁ ବିଶେଷ କଷ୍ଟ ଭୋଗ କରିବାକୁ ହୋଇ ନାହିଁ । ତଥାପି ତୁକାଜୀ କୌଣସି କୌଣସି ସ୍ଥଳରେ ରାଣୀଙ୍କ ବିନାପରାମର୍ଶରେ କାର୍ଯ୍ୟ କରି ପାରୁ ନ ଥିଲେ ।

ଅହଲ୍ୟାଦେବୀ ଯେପରି ସୁଚରିତା ଥିଲେ ସେହିପରି ମଧ୍ୟ ଧର୍ମପରାୟଣା ଥିଲେ । ପ୍ରତ୍ୟହ ସୂର୍ଯ୍ୟୋଦୟପୂର୍ବରୁ ସେ ଗାତ୍ରୋତ୍ଥାନ କରି ପ୍ରାତଃକ୍ରିୟା ସମାପନପୂର୍ବକ କତୁକ୍ଷଣ ଧର୍ମଶାସ୍ତ୍ର ଏବଂ ପୁରାଣାଦି ନିୟମିତରୂପେ ଅଧ୍ୟୟନ କରୁଥିଲେ । ତତ୍ପରେ କେତେଜଣ ବ୍ରାହ୍ମଣଙ୍କୁ ଭୋଜନରେ ପରିତୃପ୍ତ କରାଇ କ୍ଷଣିକ ବିଶ୍ରାମ ଉତ୍ତାରେ ରାଜପରିଚ୍ଛଦ ପରିଧାନପୂର୍ବକ ଧର୍ମାଧିକରଣକୁ ଯାଉଥିଲେ । ସେଠାରେ ସନ୍ଧ୍ୟା ପର୍ଯ୍ୟନ୍ତ ନିବିଷ୍ଟମନରେ ରାଜକାର୍ଯ୍ୟମାନ ବୁଝି ପୁନର୍ବାର ବିଶ୍ରାମପରେ ରାଜ୍ୟର ଅନ୍ୟାନ୍ୟ ବିଷୟର ତତ୍ତ୍ୱାବଧାନ କରୁଥିଲେ । ନିଶୀଥ ପର୍ଯ୍ୟନ୍ତ ଏହିପରି ରାଜ୍ୟର ଦୁଃଖସୁଖ ବୁଝି ସେ ଆପଣାର ଅମୂଲ୍ୟ ଶରୀରକୁ ରକ୍ତକ୍ଷୟ କରୁଥିଲେ । ଅବଶେଷରେ ୧୭୯୫ ଖ୍ରୀଷ୍ଟାବ୍ଦରେ ଷଷ୍ଟିତମବର୍ଷ ବୟଃକ୍ରମରେ ସେ ପ୍ରଜାମାନଙ୍କୁ ଘୋର ଶୋକସାଗରରେ ଭସାଇ ବିନାବ୍ୟାଧିରେ ସାନନ୍ଦରେ ନିତ୍ୟମୟଧାମକୁ ପ୍ରସ୍ଥାନ କଲେ ।

•

ଦୟା ଏବଂ ନ୍ୟାୟ ଅହଲ୍ୟାଙ୍କ ଶାସନର ମୂଳମନ୍ତ୍ର ଥିଲା । କୌଣସି ଅପରାଧୀକୁ ପ୍ରାଣହାନିଦଣ୍ଡ ଦେବାକୁ ହେଲେ ସେ ଏହା କହି ବାରଣ କରୁଥିଲେ ଯେ "ଆମ୍ଭେମାନେ କେବଳ ସାମାନ୍ୟ ମନୁଷ୍ୟ, ଈଶ୍ୱରଙ୍କ ସୃଷ୍ଟିର ଶ୍ରେଷ୍ଠବସ୍ତୁ ମାନବକୁ ନଷ୍ଟ କରିବା ଆମ୍ଭମାନଙ୍କ କ୍ଷମତାର ବହିର୍ଭୂତ ।" ଏହିପରି କରୁଣାକୋମଳ ନ୍ୟାୟ କେବଳ ସେହି ନାରୀହୃଦୟରେ ଲକ୍ଷିତ ହୁଏ । ମହାରାଣୀ ଭିକ୍ଟୋରିୟା ତହିଁର ଅନ୍ୟତମ ନିଦର୍ଶନ । ଚାଟୁବାକ୍ୟ ବା ଅଯଥା ପ୍ରଶଂସା ଅହଲ୍ୟାଙ୍କର କର୍ଣ୍ଣଶୂଳ ଥିଲା । କଥିତ ଅଛି ଜଣେ ବ୍ୟକ୍ତି ତାହାଙ୍କର ସବିସ୍ତାର ପ୍ରଶଂସା ବର୍ଣ୍ଣନପୂର୍ବକ ଖଣ୍ଡିଏ ପୁସ୍ତକ ପ୍ରଣୟନ କରିଥିଲେ । ରାଣୀ ତାହା ଶୁଣିପାରି ଅଚିରେ ତାହା ନଦୀରେ ଫିଙ୍ଗିଦେବାକୁ ଆଦେଶ ଦେଇଥିଲେ । ସଦାପ୍ରସନ୍ନତା ଅହଲ୍ୟାଦେବୀଙ୍କର ଗୋଟିଏ ସ୍ୱାଭାବିକ ଭୂଷଣ । ବିପଦସମୟରେ ସୁଦ୍ଧା ତାହାଙ୍କର ପ୍ରଫୁଲ୍ଲତା ଓ ତେଜସ୍ୱିତା ହ୍ରାସପ୍ରାପ୍ତ ହେଉ ନ ଥିଲା । ସ୍ଥୂଳରେ କୁହାଯାଇପାରେ, ତାଙ୍କ ସଦୃଶ ଗୁଣବତୀ ଏବଂ ଧର୍ମପରାୟଣା ରାଣୀ ପୃଥିବୀରେ ବିରଳ ।

# ତୁଳସୀସ୍ତବକ ।

## (ବର୍ଷା)

( କଳହଂସ କେଦାର ।)

ପ୍ରସ୍ରବଣ ଶଇଳେ କଲେ ବସତି
ସୌମିତ୍ରି ସଙ୍ଗେ ପ୍ରଭୁ ଯାଦବପତି,
ବହଇ ଗୋଦାବରୀ ସେ ଗିରିପାଦେ
ଶିଳାବନ୍ଧୁର ଶେଯେ ଝର୍ଝରନାଦେ ।

ଏକେ ସୁନ୍ଦର ଗିରି ଝରଣୀଜାଲ
ଦୁଜେ ମଧ୍ୟରେ ବଢେ ବରଷାକାଳ,
ମେଘମାଳେ ମେଦୁର ଦେଖି ଦିଗାନ୍ତ
କହନ୍ତି ଲକ୍ଷ୍ମଣଙ୍କୁ ଶ୍ରୀରଘୁମଣି—

ଲକ୍ଷ୍ମଣ, ଘନ ଦେଖି ନାଚଇ କେକୀ
ଭକତ ଯଥା ଭବମାୟା ଉପେକ୍ଷି,
ବଢରେ ଅକାତରେ ଜୀବନ ଘନ
ଧନ୍ୟ ଯେ ଦାତା ଜାଣେ ଯାଚକ ମନ ।

ନୀଳ ନୀରଦମାଳେ ଖେଳେ ଚପଳା
ଖଳପୀରତି ପ୍ରାୟେ ସଦା ଚପଳା,
ବର୍ଷନ୍ତି ମଣ୍ଡୂକେ ନଇଁ ଅମ୍ବୁଦେ
ବିଦ୍ୟା ସମ୍ପଦେ ଯଥା ନମନ୍ତି ବୁଧେ ।

କେନ କୌଶିକ କାହିଁ କେନ ଶିଖରେ
ବିକର୍ଣ୍ଣ ଜ୍ୟୋତି-ସ୍ରୋତ ସୃଜେ ଅମ୍ବରେ,
ମଧ୍ୟେ ଜୀମୂତଜାଲ ଶକ୍ରକାର୍ମୁକ
ଥଣା ଉଙ୍କିଲେ ଯଥା ଅସ୍ତ୍ରକ ମୁଖ ।

ଠାବେ ଠାବେ ଶଇଳ ନୀଳବସ୍ତ୍ରେ
ଧବଳ ଅଭ୍ରଖଣ୍ଡ କି ଶୋଭା ବସ୍ତ୍ରେ!
ଝରେ ନିର୍ଝର ପ୍ରତେ ପଡ଼ୁଛନ୍ତି କି
କ୍ଷୀରୋଦ ଫେଣ ବିଷ୍ଣୁଅଙ୍ଗେ ଛୁଟନ୍ତି!

ଜଳପ୍ରପାତ ଗର୍ଜି ଗମ୍ଭୀର ରବେ
ତୁଙ୍ଗ ଶୃଙ୍ଗରୁ ଡେଇଁପଡ଼େ ଭୈରବେ,
ସେ ସ୍ୱନେ ପ୍ରତିସ୍ୱନ ଦିଅଇ ଦିଶି
ଧର୍ମଶାସନେ ଦୁହେଁ ବିବେକପରି ।

ସହସ୍ର ଧାରାପାତ ଶଇଳଗଣ
ଖଳ ବଚନ ଯଥା ସହେ ସୁଜନ,
ଫିଟିଛି ଝର, ଦେଖ ଶଇଳ ଅଙ୍ଗେ
ପାଷଣ୍ଡେ ହରି-ପ୍ରେମ ଯଥା ସୁସଙ୍ଗେ ।

ଶୈଳେନ୍ଦ୍ର-କୂଳ ଲଙ୍ଘି ଗିରିସରିତେ
ମତ୍ତ ପାମରେ ଯଥା ଅଳପବିତ୍ତେ,
ଗୋଦାବରୀକି ସର୍ବେ କରନ୍ତି ଗତି
ମହତ ଆଶ୍ରିତଙ୍କୁ କାହିଁ ମୁକତି?

ଅବିଳ ନବଜଳ ପରଶି ମଣ୍ଡି
ମାୟାରେ ଜୀବ ଯଥା ଜଡ଼ିତ ହୁଅଇ,
ନିରତେ ନୀରପାତେ ପୂରିଲା ସର
ସାତ୍ତ୍ୱିକଗୁଣେ ଯଥା ସାଧୁ ଅନ୍ତର ।

ନିମ୍ନଗା ନୀର ବେଗେ ସାଗରେ ଧାଏଁ
ଶାନ୍ତିତେ ଭକ୍ତଜନ ମନ ପରାୟେ,
ସାଗରେ ନିଜ ଗୋତ୍ର ଯାଏ ବିସ୍ମରି
ଭକ୍ତ ତନ୍ମୟ ଯଥା ଲଭିଲେ ହରି ।

ଲଙ୍ଘନ୍ତି ନଦୀସ୍ରୋତ ସେତୁବନ୍ଧନ
ରାଜଦ୍ରୋହୀ ଯେସନ ରାଜଶାସନ,
ବହିଯାଉଛି ବାରି ଭେଦ କୂଳର
ମର୍ଯ୍ୟାଦା ଲଙ୍ଘେ ଯଥା ସ୍ୱତନ୍ତ୍ରା ନାରୀ ।

ଦର୍ଦ୍ଦୁର ରବ ଶୁଣି ନୀରବ ପିକ
ମୂଢ଼ ସଭାରେ ଯଥା ମୂକ ଧାର୍ମିକ,
ଡାହୁକ ବଣକୁଞ୍ଜେ ନିଭୃତେ ରାବେ
ବହୁଭାଷୀ ଯେସନେ କଳେନ୍ତ ସ୍ୱଭାବେ ।

ହରିତ ଦୂର୍ବାଦଳେ ହୋଇ ମଣ୍ଡନ
ନବାଧରୂଷ ମଣ୍ଡି ଦିଶେ ଯତନ,
ସରସ ସାଧୁ ହୃଦ ହୁଏ ଯେପରି
ଶୁଷ୍କ ବୈରାଗ୍ୟେ ଭକ୍ତିରସ ସଞ୍ଚରି ।

ଫୁଟନ୍ତି କର୍ଣ୍ଣିକାର ବୃକ୍ଷେ ଅନେକ
ସାଧକ ହୃଦେ ଯଥା ଉଦେ ବିବେକ,
ଅର୍କପାଦପ ହୋଇଲା ପତ୍ର-ବିହୀନ
ଯୌବନ୍ତ୍ୟେ ଖଣ୍ଡିଲେ ଯଥା ସୁମନ୍ତ୍ରୀ ଦୀନ ।

କଦମ୍ବ ବିକଶିଲା ଚଉ କାନନେ
କଦମ୍ବବନ୍ଧୁ ମେଘ-ମନ୍ଦ୍ର ନିସ୍ୱନେ,
ଭକ୍ତବନ୍ଧୁ ହରି-ନାମ କୀର୍ତ୍ତନୁ
ହର୍ଷେ ପୁଲକେ ଯଥା ଭକତ ତନୁ ।

ଗୁଳ୍ମଗହନେ ପଥ ଗଲାଣି ଛାଇ
ବିଧର୍ମୀ ରାଜ୍ୟପଣେ ଶାସ୍ତ୍ର ଯେପରି,
ଶସ୍ୟେ ବସୁଧା କେଡ଼େ ଶୋଭାସମ୍ପଦ
ଉପକାରୀ ଜନର ଯେସନ ସମ୍ପଦ ।

ଉଭେଇଗଲେ ନଭୁଁ ଜ୍ୟୋତିଷ୍କଗଣେ
ଜ୍ୟୋତି ଦେଖାଇଦେଲେ ଜ୍ୟୋତିରିଙ୍ଗଣେ,
ମୂର୍ଖରାଜ୍ୟେ ଯେସନ ବଢ଼େ ଆଦର
ନିର୍ଗୁଣେ, ଗୁଣିଜନେ ହୁଅନ୍ତି ପର ।

କୃଷକେ ଉପାଡ଼ନ୍ତି ବାଲୁଙ୍ଗା କ୍ଷେତୁଁ
ସାଧୁ ଯେସନ ଅମୃ·ବଡମା ଚେତୁଁ,
ସଳିଳୁଁ ପଳାଇଲେ କୋକେ ହଉଚେ
ଅବୁଝା ରାଜା ରାଜ୍ୟୁଁ ଯଥା ପଣ୍ଡିତେ ।

ନ ଉଠେ ନୀର ସତ୍ତ୍ୱେ ତୃଣ ଉପରେ
ବର୍ଷାରେ କାମପ୍ରାପ୍ତେ ସନ୍ତ ଅନ୍ତରେ,
ଜନ୍ତୁସଙ୍କୁଳ ବନସ୍ଥଳୀ ସମ୍ପ୍ରତି
ସୌରାଜ୍ୟେ ପ୍ରଜାପୂର୍ଣ୍ଣ ରାଷ୍ଟ୍ର ଯେମତ ।

ବାଟୋଇ ଠାବେ ଠାବେ ଅଟକି ରହେ
ଛନ୍ଦ୍ୟ ଯଥା ଦିବ୍ୟଜ୍ଞାନ ଉଦୟେ,
ପ୍ରବଳ ବାୟୁ କେବେ ଉଡ଼େ ଜଳଦ
କୁପୁତ୍ର ଯଥା କୁଳଧର୍ମ ସମ୍ପଦ ।

କ୍ଷଣେ ନିବିଡ଼ତମ ଗ୍ରାସଇ ଧରା
କ୍ଷଣେ ଉପୁଜେ ପୁଣି ପ୍ରଚଣ୍ଡ ଖରା,
କୁସଙ୍ଗ ଏହିପରି ସୁଜ୍ଞାନ ନାଶେ
ସୁସଙ୍ଗ ଏହିପରି ଜ୍ଞାନ ପ୍ରକାଶେ ।

ଦେଖ ମଳିନ ହୋଇ ଅଶ୍ରମ ସର
ନ ବହେ ହୃଦେ ଛବି ତାରବନର,
ମତକ କଳୁଷିତ କଲେ ଯେସନେ
ଅକ୍ଷମ ଜନେ ପରଗୁଣଗ୍ରହଣେ ।

ଦେଖ ଦେଖ ଅଗ୍ରତେ ସରସୀ ଜଳେ
ପଢ଼ି ମଣ୍ଡୂକ କୂର ଅହିକ ବଳେ
ବଢ଼ିଲେ ରକ୍ଷୁ ଗକ୍ଷୁ ଉର୍ଦ୍ଧ୍ୱେ ଉଡ୍ଡୀନ
ଉହିଙ୍କି ଶିଶୁ କର୍ଣ୍ଣି ଦେଲ ଗିଳଣ ।

କାଳକବଳେ ପିନା ଏରୂପେ, ଭାଇ
ଅଗତେ ନର ଘାଇ ହେଉଣ ଥାଇ,
ତେବେହେଁ ମନାସଇ ଲଭି ଏ ଦଶା
ମେଣ୍ଟାଇବାକୁ ଭବ-ଭୋଗ-ଲାଲସା ।

ବରଷାକାଳ ଅଟେ ଉଦ୍ଭିଦ-ମିତ୍ର
ମାତ୍ର ପଙ୍କଜ ମଲ୍ଲ ନୋହେ ବଚିତ୍ର !
ଜଳଗଦ୍ଧଳ ହେଲ ତା ପକ୍ଷେ ଯମ
ଅତି ସମ୍ପଦ, ବାବୁ, ମହା ବିଷମ ! "ରାଧାନାଥ

---

# ଟେଲିଫୋନ ବା ଦୂରଶ୍ରବଣଯନ୍ତ୍ର ।

ବର୍ତ୍ତମାନଯୁଗରେ ଟେଲିଫୋନ ଗୋଟିଏ ନିତ୍ୟବ୍ୟବହାର୍ଯ୍ୟ ମହୋପକାରୀ ଯନ୍ତ୍ର । ଏହା ସାହାଯ୍ୟରେ ସର୍ବଶ୍ରେଣୀର ଲୋକ ଅଳ୍ପକାଳ ମଧ୍ୟରେ ବହୁକାଳ-ସାପେକ୍ଷ କର୍ମମାନ ସମ୍ପାଦନ କରିପାରୁଅଛନ୍ତି ଏବଂ ଅପଦସମୟରେ ପୂର୍ବରୁ ସାବଧାନ ହୋଇ ପାରୁ ଅଛନ୍ତି । ପ୍ରଥମେ ଯେତେବେଳେ ତାଡ଼ିତବଳ ପ୍ରୟୋଗରେ ଟେଲିଗ୍ରାଫ୍ ବା ତାରବାର୍ତ୍ତାର ସୃଷ୍ଟି ହେଲା ସେତେବେଳେ ଲୋକେ ବିଜ୍ଞାନର ମହିମାଦର୍ଶନରେ ବିସ୍ମିତ ହୋଇଥିଲେ । ବର୍ତ୍ତମାନ ଟେଲିଫୋନ ତତୋଽଧିକ ବିସ୍ମୟୋତ୍ପାଦକ । ସେଥିରେ କେବଳ ସାଙ୍କେତିକ ଶବ୍ଦ ତାରଦ୍ୱାରା ଦୂର ଦେଶକୁ ଯାଉଥିଲା । ଏଥିରେ ବର୍ତ୍ତମାନ ସୁଦୂରସ୍ଥିତ ଲୋକର କଥା ସ୍ପଷ୍ଟ ଶୁଣାଯାଉଅଛି । ଏହି ଯନ୍ତ୍ରସାହାଯ୍ୟରେ ବର୍ତ୍ତମାନ ମୁହୂର୍ତ୍ତକମଧ୍ୟରେ ବ୍ୟବସାୟୀ ଦୂରସ୍ଥିତ ବ୍ୟବସାୟୀ ସହିତ ପଣ୍ୟଦ୍ରବ୍ୟାଦିର ମୂଲ୍ୟର ହ୍ରାସବୃଦ୍ଧି ବିଷୟରେ

କଥାବାର୍ତ୍ତା କରୁଅଛନ୍ତି, ରାଜପୁରୁଷ ତାହାଙ୍କର ଅଧୀନସ୍ଥ କର୍ମଚାରୀ ସହିତ ରାଜକାର୍ଯ୍ୟର ପରାମର୍ଶ କରୁଅଛନ୍ତି, ସଂବାଦପତ୍ରର ସମ୍ପାଦକ ସ୍ୱପ୍ରକୋଷ୍ଠରେ ବସି ଦୂରସ୍ଥିତ ଯନ୍ତ୍ରାଳୟକୁ ମୁଦ୍ରଣାଦି ବିଷୟରେ ସନ୍ଦେଶ ପ୍ରେରଣ କରୁଅଛନ୍ତି, ସେନାନାୟକ ଯୁଦ୍ଧଭୂମିରୁ ଦୂରସ୍ଥ ଶିବିର ବା ରାଜଧାନୀକୁ ଯୁଦ୍ଧବାର୍ତ୍ତା ପ୍ରେରଣ କରୁଅଛନ୍ତି । ରେଲପଥରେ ଏକ ବିଶ୍ରାମସ୍ଥାନର କର୍ମଚାରୀ ପରବର୍ତ୍ତୀ ବିଶ୍ରାମ-ସ୍ଥାନର ସହଯୋଗୀକୁ ବାଷ୍ପୀୟ ଶକଟର ଉପସ୍ଥାନ ଓ ପ୍ରସ୍ଥାନର ସଂବାଦ



ଟେଲିଫୋନ ବା ଦୂରଶବ୍ଦଯନ୍ତ୍ର ।

ଦେଉଅଛନ୍ତି । ଉତ୍କଟରୋଗଗ୍ରସ୍ତ ବ୍ୟକ୍ତି ହଠାତ୍ ଦୂରସ୍ଥିତ ମୁଖ୍ୟ ଚିକିତ୍ସକଙ୍କୁ ଆହ୍ୱାନ କରୁଅଛନ୍ତି, ଗୃହସ୍ଥ ସ୍ୱଭବନରେ ବସି ଦୂରସ୍ଥ ବନ୍ଧୁମାନଙ୍କ ସହିତ ଆଳାପ କରୁଅଛନ୍ତି, କୌଣସି ବିପଦର ଆଶଙ୍କା ଦେଖିଲେ ଲୋକେ ଦୂରସ୍ଥିତ ଲୋକଙ୍କୁ ପୂର୍ବରୁ ସାବଧାନ କରାଇଦେଉଅଛନ୍ତି । ଏହାଦ୍ୱାରା ଯେ କେବଳ ସମୟର ଯଥେଷ୍ଟ ରକ୍ଷା ହେଉଅଛି ବା ପରିଶ୍ରମର ଲାଘବ ହେଉଅଛି ତାହା ନୁହେ । ସେଥିଯୋଗୁଁ ଅନ୍ୟାନ୍ୟ ଅନେକ କାର୍ଯ୍ୟ କରିବାର ସୁବିଧା ହେଉ-ଅଛି ଏବଂ ଇତସ୍ତତଃ ଧାବନଜନିତ ଶକ୍ତିକ୍ଷୟ, ସ୍ୱାସ୍ଥ୍ୟଭଙ୍ଗ ଓ ଅନ୍ୟ ଅପଦରୁ ମଧ୍ୟ ଲୋକଙ୍କୁ ରକ୍ଷା ମିଳୁଅଛି । ଏହି ଯନ୍ତ୍ର ଉଦ୍ଭାବିତ ହୋଇ ନ ଥିଲେ ସଭ୍ୟତମ ଦେଶର ଲୋକେ କ୍ଷଣେହେଁ ଚଳିପାରନ୍ତେ ନାହିଁ ଅଥବା ସ୍ରୋତ-

ବେଗରେ ଏତେ କାର୍ଯ୍ୟ ଉଠାଇ ପାରନ୍ତେ ନାହିଁ । ଏ ଯନ୍ତ୍ରର ଉଦ୍ଭାବକ ଗ୍ରେହାମ୍ ସାହେବ ଅମେରିକାର ଯୁକ୍ତରାଜ୍ୟ ଅନ୍ତର୍ଗତ ବୋଷ୍ଟନ ବିଶ୍ୱବିଦ୍ୟାଳୟର ଜଣେ ବିଜ୍ଞାନ-ଅଧ୍ୟାପକ । ଏଡିନ୍‌ବର୍ଗ ତାହାଙ୍କର ଜନ୍ମଭୂମି ଥିଲେହେଁ ବହୁକାଳ ଅମେରିକାରେ ବାସ କରି ରହିଥିବାରୁ ସେ ଅମେରିକାବାସୀ ବୋଲି ପରିଚିତ । ସର୍ବଦା ବିଜ୍ଞାନ ଅନୁଶୀଳନରେ ଜୀବନକୁ ନିୟୋଜିତ କରିଥିବାରୁ ସେ ଅନେକ ବୈଜ୍ଞାନିକ ଯନ୍ତ୍ର ନିର୍ମାଣ କରିଥିଲେ । ଟେଲିଫୋନଯନ୍ତ୍ର ନିର୍ମାଣପୂର୍ବରୁ ସେ ତାରବାର୍ତ୍ତାରେ କିଛିକାଳ କାର୍ଯ୍ୟ କରିଥିଲେ, ତେଣୁ ଏଥିପ୍ରତି ତାହାଙ୍କର ଦୃଷ୍ଟି ସ୍ୱଭାବତଃ ଆକୃଷ୍ଟ ହୋଇଥିଲା । ୧୮୭୬ ଖ୍ରୀଷ୍ଟାବ୍ଦରେ ସେ ଏହି ବାକ୍ୟବାଗୀ ତାରବାର୍ତ୍ତାବହ ପ୍ରଥମେ ନିର୍ମାଣ କରି ତାହାର ଫଳ ସାଧାରଣରେ ପ୍ରକାଶ କରିଥିଲେ । ସେହିକାଳରୁ ଏହି ଯନ୍ତ୍ରର କ୍ରମୋନ୍ନତି ହୋଇଆସୁଅଛି ।

ସର୍ବପ୍ରଥମେ ଏହି ଯନ୍ତ୍ର ବିଜ୍ଞାନରେ ସମୁନ୍ନତ ଅମେରିକାଖଣ୍ଡରେ ପ୍ରଚଳିତ ହୋଇଥିଲା । ଅନ୍ୟାନ୍ୟ ଦେଶର ଲୋକେ ସେତେବେଳେ ଏ ସଂବାଦରେ ବିଶ୍ୱାସ ସ୍ଥାପନ କରିପାରୁ ନ ଥିଲେ । ଜଣେ ଜଣେ ପ୍ରସିଦ୍ଧ ବୈଜ୍ଞାନିକ ନାନାଦେଶରେ ଭ୍ରମଣ କରି ଏହାର ଉପଯୋଗିତା ବିଷୟରେ ବକ୍ତୃତା ପ୍ରଦାନ କରିବାକୁ ଲାଗିଲେ । ୟୁରୋପରେ ଏକଦା ଏହି ବକ୍ତୃତା ଶ୍ରବଣ କରି ଇଂଲଣ୍ଡର ବିଖ୍ୟାତ ବୈଦ୍ୟୁତିକବିଜ୍ଞାନବିତ୍ ସର୍ ଉଇଲିୟମ୍ ଟମସନ୍ ଏହାର ପରୀକ୍ଷାଲାଗି କୃତସଂକଳ୍ପ ହୋଇଥିଲେ ଏବଂ ପରୀକ୍ଷାରେ ଏହାର ଫଲୋପଧାୟକତା ପ୍ରମାଣିତ କରି ସ୍ୱଦେଶରେ ଏହାର ପ୍ରଚଳନର ବାଞ୍ଛନୀୟତା ପ୍ରକାଶ କଲେ । କ୍ରମେ ଏହା ସଭ୍ୟଦେଶମାନଙ୍କରେ ବହୁଳରୂପେ ପ୍ରଚଳିତ ହୋଇ ବର୍ତ୍ତମାନ ଭାରତର ବଡ଼ ବଡ଼ ନଗରକୁ ଆସିଛି । ଏବେ ପ୍ରାୟ ପ୍ରତି ନଗର ଉପନଗରରେ ଏହାର ବ୍ୟବହାର ଦେଖାଗଲଣି ଏବଂ ସାଧାରଣ ଲୋକେ ହିଁ ଏତଦ୍ଦ୍ୱାରା ଦୂରରୁ ସଂବାଦ ଗ୍ରହଣ ଓ ପ୍ରେରଣରେ ସମର୍ଥ ହେଲେଣି । ଭାରତବର୍ଷକୁ ଯେତେବେଳେ ଏହି ଯନ୍ତ୍ର ଆସିବାର ପ୍ରଥମ ପ୍ରସ୍ତାବ ହେଲା, ସେତେବେଳେ ଅନୁମାନ କରଯାଇଥିଲା ଯେ, ଏହି ଯନ୍ତ୍ରଦ୍ୱାରା ପ୍ରାୟ ନଅକ୍ରୋଶ ଦୂରରୁ କଥା ଶୁଣାଯାଇ ପାରିବ । ମାତ୍ର ୧୮୮୦ ଖ୍ରୀଷ୍ଟାବ୍ଦରେ ଗୋଟିଏ ସ୍ଥାନରେ ସେଥିର ପରୀକ୍ଷା

ହେବାରେ ବଂଶଛକ୍ରୋଶ ଦୂରରୁ କଥା ଶୁଣାଯାଉଥିଲା । ତତ୍ପରେ ପରୀକ୍ଷାଦ୍ୱାରା ସ୍ଥିର କରାଯାଇଅଛି ଯେ ଏତଦ୍ୱାରା ପଚାଶ ଯୋଜନ ବା ୪୦୦ ମାଇଲ୍ ଦୂରରୁ କଥା ଶୁଣାଯାଇପାରେ । ଓଡ଼ିଶାର ବାମଣ୍ଡା ରାଜ୍ୟରେ ୮୦ ମାଇଲଦୂରାନ୍ତର ଟେଲିଫୋନ ଚଳୁଅଛି । କ୍ରମଶଃ ଏହାର ବହୁଳପ୍ରଚାରର ସଙ୍ଗେ ଉତ୍ତରୋତ୍ତର ଶକ୍ତିବୃଦ୍ଧିର ପରିଚୟ ମିଳୁଅଛି, ବୈଜ୍ଞାନିକମାନଙ୍କର ମଧ୍ୟ ଏହି ଉଚ୍ଚତମ ଆଶା ଅଛି ଯେ ଏକଦା ଇଂଲଣ୍ଡ, ଆମେରିକା ଏବଂ ଭାରତବର୍ଷ ଏହି ସନ୍ଦେଶବାହୀ ତାରଦ୍ୱାରା ସଂଯୁକ୍ତ ହେବ ।

ଏହି ଯନ୍ତ୍ରର ନିର୍ମାଣକୌଶଳ ଅତ୍ୟନ୍ତ ଅଦ୍ଭୁତ । ପ୍ରାୟ ଏକଫୁଟ ବା ପାଦୈକ ଲମ୍ବା ଗୋଟିଏ ଧାତବ ନଳର ବକ୍ରୀକୃତ ଦୁଇମୁଖ କିଞ୍ଚିତ ବିସ୍ତୃତ ଏବଂ ବୃତ୍ତାକାର । ଏହି ନଳ ଏବଂ ତାହାର ମୁଖଦ୍ୱୟ ଏପରି ମାପରେ ଗଠିତ ଯେ ଗୋଟିଏ ମୁଖ କାନଉପରେ ଲଗାଇ ରଖିଲେ ଅନ୍ୟଟି ମୁହଁ ଆଗକୁ ରହେ । ସେହି ମୁଖଲଗ୍ନ ଅତିପାତଳ ଧାତୁପତ୍ରରୁ ଉତ୍ଥିତ ହୋଇଥିବା ତାର ବାହାରି ଯାଇଅଛି ଏବଂ ତାହା ଅନ୍ୟଏ ଥିବା ନଳ ସଙ୍ଗେ ସଂଯୁକ୍ତ ହୋଇଅଛି । ଏହି ନଳମଧ୍ୟରେ ଖଣ୍ଡିଏ ଚୁମ୍ବକ ଲୌହଦଣ୍ଡ ଥାଏ । ସେହି ଦଣ୍ଡଟି ଲୌହତାରରେ ଜଡ଼ିତ ହୋଇଥାଏ । ଏହି ନଳ ଉପରେ ମୁଖ ରଖି କଥା କହିଲେ ସେ ପାତଳ ଧାତୁପତ୍ର ମୁଖବାୟୁରେ କମ୍ପିତ ହୁଏ ଏବଂ ସେହି ଚୁମ୍ବକ ଲୌହ ସଂଯୋଗରେ ଚୁମ୍ବକଦଣ୍ଡରେ ତଡ଼ିତର ଉତ୍ପତ୍ତି ହୁଏ ଏବଂ ତାଡିତ ବଳରେ ତାରଦ୍ୱାରା ସେ ଶବ୍ଦ ଦୂରକୁ ଯାଇ ଅନ୍ୟ ନଳର ସେହି ଅଙ୍ଗକୁ କମ୍ପିତ କରେ । ସେଠାରେ ନଳମୁଖ କର୍ଣ୍ଣରେ ଦେଇ ଶୁଣୁଥିଲେ ମନୁଷ୍ୟର କଥା ସ୍ପଷ୍ଟ ଶୁଣିପାରିବେ । ସେ ବ୍ୟକ୍ତି ତେଣୁ କିଛି କହିଲେ ଏଣେ ପୂର୍ବୋକ୍ତ ବ୍ୟକ୍ତି କର୍ଣ୍ଣସ୍ଥିତ ନଳମୁଖରେ ତାହା ଶୁଣିପାରିବେ । ଏହା ଅବଶ୍ୟ ସନ୍ନିହିତ ଲୋକର ସ୍ୱରପ୍ରାୟ ତେତେ ସ୍ପଷ୍ଟ ନୁହେ, କିଞ୍ଚିତ ସାନୁନାସିକ । ଏହି ଦୋଷ ମଧ୍ୟ ଦୂର କରିବାପାଇଁ ବିଜ୍ଞାନ ସର୍ବଦା ଯତ୍ନଶୀଳ । ବର୍ତ୍ତମାନ ମଧ୍ୟ ପରିଚିତ ବ୍ୟକ୍ତିର ସ୍ୱର ଦୂରକୁ ଚିହ୍ନାଯାଉଅଛି । ପ୍ରାତ୍ୟହିକ ଅଭ୍ୟାସ ସ୍ଥଳରେ ସନ୍ଦେଶପ୍ରେରକଙ୍କର ସ୍ୱନ ଉତ୍ତମରୂପେ ବାରିହୁଏ ।

ଦୂରଶ୍ରବଣଯନ୍ତ୍ର ସାହାଯ୍ୟରେ ସଭ୍ୟ ଦେଶମାନଙ୍କରେ କପରି ଦ୍ରୁତ-ଗତିରେ କାର୍ଯ୍ୟ ହୁଏ ତାହାର ଗୋଟିଏ ଦୃଷ୍ଟାନ୍ତ ନିମ୍ନରେ ଉଲ୍ଲେଖ କରା-ଯାଉଅଛି । ଏକଦା ଜଣେ ୟୁରୋପୀୟ ଭ୍ରମଣକାରୀ ଆମେରିକାରେ କୌଣସି ବନ୍ଧୁଙ୍କର ଅତିଥି ହୋଇଥିଲେ । ଗୃହସ୍ୱାମୀ ତେତେବେଳେ ଉପସ୍ଥିତ ନ ଥିବାରୁ ଗୃହିଣୀ ପ୍ରଥମେ ଅତିଥିଙ୍କୁ ଆସନରେ ବସାଇ ଯଥୋଚିତ ଉପଚାର ପ୍ରଦର୍ଶନ କଲେ ଏବଂ ତତ୍‌କ୍ଷଣାତ୍ ତାହାଙ୍କ ହସ୍ତରେ ଖଣ୍ଡିଏ ସଂବାଦପତ୍ର ଦେଇ ସ୍ୱୟଂ ଉକ୍ତ ଯନ୍ତ୍ର ଧରି ବସିଲେ । ପ୍ରଥମେ ସେ ଦୂରସ୍ଥିତ ସ୍ୱାମୀଙ୍କୁ ବନ୍ଧୁଙ୍କର ଆଗମନ ବାର୍ତ୍ତା ଜଣାଇଲେ । ତତ୍ପରେ ପ୍ରାୟ ଦୁଇକ୍ରୋଶଦୂରସ୍ଥିତ ଅଶ୍ୱ-ଶାଳାକୁ ଗାଡ଼ି ଘୋଡ଼ା ଆଣିବାକୁ ଭୃତ୍ୟକୁ ସଂବାଦ ଦେଲେ ଏବଂ ପ୍ରାୟ ତିନି-କ୍ରୋଶଦୂରସ୍ଥିତ ନଦୀର ଜଣେ ନାବିକଙ୍କ ସହିତ ସନ୍ଧ୍ୟା ସମୟରେ ନୌ-ବିହାର କରିବାର ପ୍ରସ୍ତାବ କଲେ । ତହିଁଉତ୍ତାରେ ପୁଣି ୧୫ । ୨୦ କ୍ରୋଶ ଦୂରରେ ଥିବା ବନ୍ଧୁମାନଙ୍କୁ ନିଜ ଗୃହରେ ଭୋଜନ କରିବା ନିମିତ୍ତ ଆମନ୍ତ୍ରଣ କଲେ ଏବଂ ଭୋଜ୍ୟ ସାମଗ୍ରୀମାନ ପ୍ରସ୍ତୁତ କରିବାପାଇଁ ଭିନ୍ନଭିନ୍ନ ଭୋଜ୍ୟଶାଳାମାନଙ୍କର ସୂପ-କାରଗଣଙ୍କୁ ଆଦେଶ ପ୍ରଦାନ କଲେ । ପରିଶେଷରେ ପୁଣି ଯନ୍ତ୍ରମୁଖ ଫେରାଇ ନଗରର ବିଭିନ୍ନସ୍ଥାନକୁ ବାହକଦ୍ୱାରା ପ୍ରୟୋଜନୀୟ ଦ୍ରବ୍ୟାଦି ଜଣାଇ ଆଣିବାର ବ୍ୟବସ୍ଥା କରାଇ ବନ୍ଧୁଙ୍କ ନିକଟରେ ଉପସ୍ଥିତ ହେଲେ । ଏଥିରେ ପ୍ରାୟ ଅର୍ଦ୍ଧ-ଘଣ୍ଟାକାଳ ଲାଗିଥିଲା । ତେତେବେଳକୁ ଅତିଥି ସଂବାଦପତ୍ରର ଗୋଟିଏ ପୃଷ୍ଠା-ମାତ୍ର ପଢ଼ିଥାଆନ୍ତି । ଏହି ଅଳ୍ପ ସମୟ ମଧ୍ୟରେ ଏତେ କାର୍ଯ୍ୟ ହୋଇଥିବାର ଶୁଣି ସେ ବୈଦେଶିକ ବନ୍ଧୁ ଅବାକ୍ ହୋଇଗଲେ । ବର୍ତ୍ତମାନ ଆମେରିକାରେ ଏହି ଯନ୍ତ୍ରବଳରେ ଯେପରି କାର୍ଯ୍ୟମାନ ହୁଏ ତାହା ଶୁଣିଲେ ଯଥାର୍ଥ ବିସ୍ମିତ ହେବାକୁ ହୁଏ । ଗୋଟିଏ ସ୍ଥାନରେ ଉପସ୍ଥିତ ହୋଇ ଯେଉଁ ଗୃହକୁ ଜନଶୂନ୍ୟ ଦେଖିଥିବ, କ୍ଷଣକପରେ ଦେଖାଯିବ ତାହା ବହୁଜନସମାଗମ ଏବଂ ନାନାଦ୍ରବ୍ୟ ସମ୍ଭାରରେ ସମାକୀର୍ଣ୍ଣ ହୋଇଅଛି । କେବଳ ସେହି ଦୂରଶ୍ରବଣଯନ୍ତ୍ର ଯୋଗେ କ୍ଷଣକରେ ବିଭିନ୍ନସ୍ଥାନର ଲୋକେ ସଂବାଦ ପାଇ ଦ୍ରୁତଗାମୀ ଯାନରେ ଶୀଘ୍ର ଦ୍ରବ୍ୟସହିତ ଯାଇ ଜୁଟି ହୋଇଯାନ୍ତି । କିନ୍ତୁ ଏହି ବିସ୍ମୟୋତ୍ପାଦକ ଯନ୍ତ୍ରର

କାର୍ଯ୍ୟକାରିତା ସର୍ବତ୍ର ସୁଲଭ ନୁହେ । ଯେଉଁ ସ୍ଥାନଯାଏ ତାର ସଂଯୋଗ ଥିବ ସେହି ସ୍ଥଳ ପର୍ଯ୍ୟନ୍ତ ଏହା ଦ୍ୱାରା ଫଳ ହେବ । ବର୍ତ୍ତମାନ ବଜ୍ଞାନର ଆଶ୍ଚର୍ଯ୍ୟ ମହିମାରେ ବିନା ତାରରେ ମଧ୍ୟ ଯନ୍ତ୍ରଯୋଗେ ଲୋକେ ଦୂରଦେଶରୁ ସଂବାଦ ପାଉଅଛନ୍ତି । ଶେଷୋକ୍ତ ଯନ୍ତ୍ରବଳରେ ସାଗରଗର୍ଭସ୍ଥିତ ବିପନ୍ନ ନାବିକ ଦୂରବର୍ତ୍ତୀ ନାବିକଙ୍କୁ ଅଥବା ଅନ୍ୟ କୌଣସି ଅଶ୍ରୟସ୍ଥାନର ଲୋକଙ୍କୁ ସଂବାଦ ଦେଉଅଛନ୍ତି । ବ୍ୟୋମଯାନରେ ଉଠି କେହି ଆକାଶମଣ୍ଡଳର ବାର୍ତ୍ତା ଭୂପୃଷ୍ଠକୁ, କେହି ବା ଦୂରସ୍ଥିତ ଶତ୍ରୁପକ୍ଷର ଚେଷ୍ଟା ଆତ୍ମପକ୍ଷର ଲୋକଙ୍କ ନିମେଷକ ମଧ୍ୟରେ ଜଣାଇଦେଉଅଛନ୍ତି । ବଜ୍ଞାନର ଅଦ୍ଭୁତ ମହିମାରେ ଅଦ୍ଭୁତ ଅଦ୍ଭୁତତର ଘଟନାମାନ ଏଣିକି କର୍ଣ୍ଣଗୋଚର ହେବାର ଅନୁମାନ କରାଯାଏ ।

---

## ପଦ୍ମ ।*

(ବଳହଂସବେଦାର ବୃତ୍ତ ।)

(୧)

କୋଟିଲାବଣ୍ୟନିଧି ରେ ପଦ୍ମ ଶୁଭ୍ର !
କି ଅମୃତେ ଗଢ଼ିଲା ତୋ ତନୁ ବିଧି ?
ତୋ ରୂପ ଦରଶନେ ମୋର ହୃଦୟ
ପୂର୍ଣ୍ଣ ଆନନ୍ଦେ ହୁଏ ଅମୃତମୟ ।

(୨)

ଟଳ ଟଳ ସୁନୀଳ ସରସୀଜଳ
ଚଳ ଚଳ ଶ୍ୟାମଳ ନଳିନୀଦଳ ।
ଢଳ ଢଳ ଭାସ୍କର—ରଶ୍ମି ଉଜ୍ଜ୍ୱଳ
ତାମଧ୍ୟେ ଢଳ ଢଳ ଶୁଭ୍ର କମଳ ।

---

* ପ୍ରକାଶକଙ୍କ ଅନୁମତି ଅନୁସାରେ ଉଦ୍ଧୃତ ।

(୩)

ହସହସ ବଦନେ ହରଷଭରେ
ଅନାଇ ରହିଅଛୁ ଭୁ. ଦବାକରେ
ତୋ ମୁଖେ ଜ୍ୟୋତିଧାରି ସେ ଦବାକର
ଢାଳିଛି ଅବରଳ ଅରେ ପୁଷ୍କର ।

(୪)

ପିଉ ଭୁ କ ଅନନ୍ଦେ ପୀୟୂଷ ସର
ସେ ଶୁଭ୍ର ଜ୍ୟୋତିଧାରି ଭକତି କର ।
ଅହା କ ଦବ୍ୟ ଶିଖ୍ୟା ତହିଁ ତୁ ଲଭୁ
ଧନ୍ୟ ଉତ୍ପଳ, ଧନ୍ୟ ତୋହର ପ୍ରଭୁ!

(୫)

ମକରନ୍ଦ ଅମୃତ ହୃଦେ ତୋହର
ତହିଁ ଝୁରଇ ବାସ କ ମନୋହର!
ସେ ମଧୁ ପାନେ ମତ୍ତ ମଧୁପଦଳ
ସେ ସୌରଭେ ପରାଣ କେତେ ଶୀତଳ !

(୬)

ଶ୍ୱେତ-ଲୋହିତେ ରଙ୍ଗା ତୋ ଶୁଭ୍ର ତନୁ
କାରେ ଦେଖିଲେ କେବେଁ ନ ଯିବ ମନୁ ।
ସର୍ବ ଶୋଭାର ତୁହି ଉପମା ସ୍ଥଳ
ଭକତ ପ୍ରେମିକର ତୁହି ସମ୍ବଳ ।

(୭)

ସ୍ନେହ କରୁଣା ଭକ୍ତି ପବିତ୍ର ରସ
ପୂରିଛି ତୋ ଅନ୍ତରେ ରେ ତାମରସ
ନୋହିଲେ କାହିଁ ତୋର ଦର୍ଶନେ ମନ
ବିମଳ ପ୍ରେମରସେ ହୁଏ ମଗନ ।

(୮)

ମଧୁମୟ ପବନ   ଯାହା ବଣରେ
ତୋ ନାମ ସଙ୍ଗେ ମିଶା   ବହିଥାଏ ବରେ,
ପ୍ରିୟ ମୁଖ ନୟନ   କର ଚରଣ
ତୋ ନାମ ସଙ୍ଗେ ବିନା   ସୁଖ କାରଣ?

(୯)

ସତ୍ୟ ଶିବ ସୁନ୍ଦର   ପରମେଶ୍ୱର
ନାମ ସଙ୍ଗତେ ଲଗ୍ନ   ନାମ ତୋହର ।
ତେଣୁରେ ଅରବିନ୍ଦ   ଭକ୍ତଜନର
ବିଭୁ ପଦାରବିନ୍ଦ   ସୁମନୋହର ।

(୧୦)

ସର୍ବ ଶୋକର ସଦ୍ମ   ରେ ପଦ୍ମ ତୋର
ସଙ୍ଗେ ନବୃତ୍ତ ଯୋଗ   ଅଚ୍ଛିନ୍ନ ମୋର ।
ଜୀବନ ମରଣରେ   ତୋ ସଙ୍ଗେ ମିଶି
ଥାଉ ମୋ ମନପଦ୍ମ   ଦିବସ ନିଶି ।

(୧୧)

କଳୁଷପଙ୍କେ ମୁହିଁ   କେତେ ମଳିନ
କେମନ୍ତେ ସଙ୍ଗ ତୋର   ହେବ ନଳିନ ।
ପଙ୍କଜ ଅଟୁ ତୁହି,   ତେଣୁ ଭରସା,
ତୋ ପରି ଶୁଭ୍ର ହେବ   ଲଭି ସୁଦଶା ।

(୧୨)

ଅନନ୍ତ ମହତ୍ତ୍ୱରେ   ମୋ ପ୍ରାଣସାଇଁ
ବୋଲ, ବୋଲିବ, ସଦା   ଥିବ ଅନାଇ ।
ଶିଖାଅ ମୋତେ ସଦା   ଏ ପୁଣ୍ୟବ୍ରତ,
ତୋର ଅଶିଷେ ପୂରୁ   ମୋ ମନୋରଥ ।   ମଧୁସୂଦନ ।

# ତାଜମହଲ ।

ନୀଳକଳେବରା ପୁଣ୍ୟତୋୟା ଯମୁନା ଯେଉଁ ନଗରୀର ଚରଣ ବିଧୌତ କରୁଅଛି, ଯେଉଁ ନଗରୀ ଏକଦା ବିଶାଳ ମୋଗଲସାମ୍ରାଜ୍ୟର ରାଜଧାନୀ ଥିଲା, ସେହି ଆଗ୍ରାନଗରୀର ଗୌରବରବି ଅସ୍ତମିତ ହୋଇଅଛି ସତ୍ୟ, କିନ୍ତୁ ତାଜମହଲ ଓ ମୋତିମସ୍‌ଜିଦ୍ ଏହି ମୋଗଲକୀର୍ତ୍ତିଦ୍ୱୟ ତଦୀୟ ମୂକସାକ୍ଷୀରୂପେ ଦଣ୍ଡାୟମାନ ରହି ଜଗତ ସମକ୍ଷରେ ଭାରତୀୟ ପୂର୍ବତନ ଶିଳ୍ପଗୌରବର ପରିଚୟ ପ୍ରଦାନ କରୁଅଛି ।



ତାଜମହଲ ।

ତାଜମହଲ ଆଗ୍ରାଠାରୁ ପ୍ରାୟ ଏକକ୍ରୋଶ ଦୂରବର୍ତ୍ତୀ ଯମୁନା ନଦୀର କୂଳରେ ମୋଗଲ ସମ୍ରାଟ ଶାହାଜାହାନ ଓ ତାହାଙ୍କର ପ୍ରିୟତମା ପତ୍ନୀ ମମତାଜମହଲଙ୍କର ସମାଧି ଉପରେ ନିର୍ମିତ ।

ପୂର୍ବକାଳରେ ମୁସଲମାନ ସମ୍ରାଟଗଣ ଜୀବିତାବସ୍ଥାରେ ନିଜ ନିଜ ସମାଧି-

ମନ୍ଦିର ନିର୍ମ୍ମାଣ କରୁଥିଲେ । ପ୍ରଥମେ ସେମାନେ ଏହି ମନ୍ଦିର ନିର୍ମ୍ମାଣ ପାଇଁ ବୃକ୍ଷଲତାପରିପୂର୍ଣ୍ଣ ଗୋଟିଏ ସୁଶୋଭିତ ଉଦ୍ୟାନ ମନୋନୀତ କରନ୍ତି ଏବଂ ସେହି ଉଦ୍ୟାନର ଚତୁର୍ଦ୍ଦିଗ ପ୍ରାଚୀରବେଷ୍ଟିତ କରି ମଧ୍ୟସ୍ଥଳରେ ଗୋଟିଏ ସୁନ୍ଦର ମନ୍ଦିର ନିର୍ମ୍ମାଣ କରନ୍ତି । ଜୀବିତାବସ୍ଥାରେ ସେମାନେ ନିଜ ନିଜ ସ୍ତ୍ରୀ ପୁତ୍ର କନ୍ୟା ପ୍ରଭୃତି ଆତ୍ମୀୟ ସ୍ୱଜନବର୍ଗଙ୍କ ସମଭିବ୍ୟାହାରରେ ଉକ୍ତ ଉଦ୍ୟାନରେ ସାୟଂସମୀରଣ ସେବନପୂର୍ବକ ତନ୍ମଧ୍ୟବର୍ତ୍ତୀ ମନ୍ଦିରରେ ଉପାସନା କାର୍ଯ୍ୟ ଅନୁଷ୍ଠାନ କରନ୍ତି । ମୃତ୍ୟୁପରେ ସେମାନଙ୍କର ସମାଧି ଏହି ମନ୍ଦିର ମଧ୍ୟରେ ପ୍ରତିଷ୍ଠାପିତ ହୁଏ । ମୋଗଲ ସମ୍ରାଟ୍ ଶାହାଜାହାନ ମଧ୍ୟ ତାଜମହଲକୁ ଏହି ଉଦ୍ଦେଶ୍ୟରେ ନିର୍ମ୍ମାଣ କରିଥିଲେ । ତାଜମହଲ ପ୍ରାୟ ତ୍ରିଶତଅଶୀତି ହସ୍ତ ପରିମିତ ବର୍ଗାକାର କ୍ଷେତ୍ରମଧ୍ୟରେ ଦଣ୍ଡାୟମାନ । ସେହି କ୍ଷେତ୍ରର ଚତୁଷ୍କୋଣରେ ଶତହସ୍ତ ଉଚ୍ଚ ଚାରିଗୋଟି ସ୍ତମ୍ଭ, ଏବଂ ମଧ୍ୟଭାଗରେ ଶୋଭିତ ଅନୁପମ ମନ୍ଦିର ବିରାଜମାନ ।

ଏହି ସମାଧିମନ୍ଦିରର ଚତୁଃପାର୍ଶ୍ୱରେ ଲୌହିତବର୍ଣ୍ଣ-ମସୃଣ-ପ୍ରସ୍ତରନିର୍ମ୍ମିତ ଚତ୍ୱାରିଂଶତ୍ ହସ୍ତପରିମିତ ଗୋଟିଏ ସୁଦୃଢ଼ ପ୍ରାଚୀର ବେଷ୍ଟିତ ହୋଇଅଛି । ଉଦ୍ୟାନପ୍ରାଙ୍ଗଣର ଶ୍ୱେତ ଓ କୃଷ୍ଣ ମାର୍ବଲ-ପ୍ରସ୍ତରନିର୍ମ୍ମିତ ସୁବୃହତ୍ ପ୍ରବେଶ-ଦ୍ୱାରଟି ବହୁ ମନୋହର ଗୁମ୍ଫଜରେ ପରିବେଷ୍ଟିତ । ଦ୍ୱାରର ପ୍ରକାଣ୍ଡ କବାଟ ଦୁଇଟି କାଂସ୍ୟନିର୍ମ୍ମିତ ଅଟେ । ସେହି ଦ୍ୱାର ଅତିକ୍ରମ କରି ଅଭ୍ୟନ୍ତରରେ ପ୍ରବେଶ କଲେ ସମ୍ମୁଖରେ ଗୋଟିଏ ବିସ୍ତୃତ ଉଦ୍ୟାନ ଦୃଷ୍ଟିଗୋଚର ହୁଏ । ନାନାବିଧ ତରୁଲତାବଳୀର ଶ୍ୟାମଳ ଛବିରେ ଉଦ୍ୟାନଟି ଅତ୍ୟନ୍ତ ନୟନାଭିରାମ ଏବଂ ଛାୟାସୁଶୀତଳ ହୋଇଅଛି । ସ୍ଥାନେ ସ୍ଥାନେ ଜଳର କୃତ୍ରିମ ଉତ୍ସମାନ ଜଳସେଚନ କରି ଉଦ୍ୟାନକୁ ଅଧିକତର ସ୍ନିଗ୍ଧ କରୁଅଛି ।

ସେହି ଉଦ୍ୟାନରେ ଦଣ୍ଡାୟମାନ ହୋଇ ଦୃଷ୍ଟି ପ୍ରସାରଣ କଲେ ପ୍ରୋକ୍ତ ବିଶାଳ ସମାଧିମନ୍ଦିରର ଅତୁଳନୀୟ ଏବଂ କଳ୍ପନାତୀତ ସୌନ୍ଦର୍ଯ୍ୟ ଚକ୍ଷୁ ସମକ୍ଷରେ ଦେଦୀପ୍ୟମାନ ହୁଏ । ପ୍ରାୟ ସପ୍ତବିଂଶତି ହସ୍ତ ପରିମିତ ସୁଦୃଢ ଓ ସମୁନ୍ନତ ଭିତ୍ତିଉପରେ ସ୍ଥାପିତ ରହି ମସୃଣ ମାର୍ବଲପ୍ରସ୍ତରନିର୍ମ୍ମିତ ଏହି

ପ୍ରକାଣ୍ଡ ମନ୍ଦିର ସଗର୍ବରେ ମସ୍ତକ ଉତ୍ତୋଳନ କରିଅଛି ଏବଂ ଏହାର ପାଦଦେଶରେ ପ୍ରବାହିତା ସ୍ୱଚ୍ଛସଲିଳା ସରିଦ୍‌ବରା ଯମୁନା ମନ୍ଦିରର ପ୍ରତିମୂର୍ତ୍ତି ନିଜର ସୁନୀଳ ପ୍ରଶାନ୍ତ ବକ୍ଷରେ ଧାରଣ କରି ଏକ ଅନିର୍ବଚନୀୟ ଶୋଭା ବିସ୍ତାର କରୁଅଛି ।

ଏହି ସମାଧିମନ୍ଦିରର ଗଠନ ପ୍ରଣାଳୀ ଅନ୍ୟାନ୍ୟ ମୁସଲମାନ ସମାଧିମନ୍ଦିରର ଗଠନ ପ୍ରଣାଳୀ ସଙ୍ଗେ ସମାନ । ମଧ୍ୟସ୍ଥଳରେ ଉପର୍ଯ୍ୟୁପରି ଦୁଇଗୋଟି ପଟଳ ବିଦ୍ୟମାନ । ଉପରିସ୍ଥ ପଟଳ ଉପରେ ଏକ ପ୍ରକାଣ୍ଡ ଗୁମ୍ବଜ ଅଛି । ଏହି ଗୁମ୍ବଜର ମୂଳ ପ୍ରଦେଶର ପରିଧି ଏବଂ ଉଚ୍ଚତା ପ୍ରତ୍ୟେକେ ପ୍ରାୟ ଏକଶତଦ୍ୱାବିଂଶତି ହସ୍ତ । ସେହି ଗୁମ୍ବଜର ଶିଖରପ୍ରଦେଶ ଓ ତଦୁପରିସ୍ଥ ଗୋଲକଦ୍ୱୟ ସ୍ୱର୍ଣ୍ଣାଚ୍ଛାଦିତ ଏବଂ ସର୍ବୋପରିସ୍ଥ ଅର୍ଦ୍ଧଚନ୍ଦ୍ରଟି ସ୍ୱର୍ଣ୍ଣନିର୍ମ୍ମିତ ହୋଇଥିଲା । ମହାରାଷ୍ଟ୍ରୀୟମାନେ ସେହି ନଗର ଅଧିକାର କରି ମନ୍ଦିରର ବହୁମୂଲ୍ୟ ଅଂଶ ଅପହରଣ କରି ନେଇ ଯାଇଥିବାରୁ ତାହା ବର୍ତ୍ତମାନ ନିକୃଷ୍ଟ ଧାତୁରେ ପରିଗଠିତ ହୋଇ ସ୍ୱର୍ଣ୍ଣବର୍ଣ୍ଣରେ ରଞ୍ଜିତ କରାଯାଇଥିଲେହେଁ ପୂର୍ବରେ ଯେପରି ମନୋହର ଥିଲା ବର୍ତ୍ତମାନ ସେପରି ହୋଇ ପାରି ନାହିଁ । ମନ୍ଦିରର ଅଳଂକୃତ ଶିଖରଭାଗ ଗୁମ୍ବଜଉପରୁ ପ୍ରାୟ ବିଂଶତିହସ୍ତ ଊର୍ଦ୍ଧ୍ୱକୁ ଉଠି ଉଦ୍ୟାନର ଚତୁଷ୍କୋଣସ୍ଥିତ ଦୀର୍ଘାକାର ମସୃଣ ସ୍ତମ୍ଭ (ମିନାର) ଚତୁଷ୍ଟୟ ତୁଳନାରେ ମନ୍ଦିରର ସୌନ୍ଦର୍ଯ୍ୟ ଶତଗୁଣିତ କରୁଅଛି । ମନ୍ଦିରର ବେଦିକାର ଚତୁଷ୍କୋଣରେ ଚାରିଗୋଟି କ୍ଷୁଦ୍ରାକାର ଗୁମ୍ବଜ ମଧ୍ୟ ରହିଅଛି ।

ଗୁମ୍ବଜ ତଳେ ସମାଧିମନ୍ଦିରର ନିମ୍ନଦେଶରେ ଶାହାଜାହାନ ଓ ତାହାଙ୍କ ପ୍ରିୟତମା ପତ୍ନୀଙ୍କର ସମାଧି । ଏହାର ପ୍ରବେଶଦ୍ୱାର ଏପରିଭାବରେ ନିର୍ମ୍ମିତ ହୋଇଅଛି ଯେ, ତାହା ବିଷାଦର ଛାୟା ବିସ୍ତାର କରି ଦର୍ଶକକୁ ସମାଧିସ୍ଥାନ ବୋଲି ସତର୍କ କରାଇଦେଉଅଛି । ଅତ୍ୟୁତ୍କୃଷ୍ଟ କାରୁକାର୍ଯ୍ୟସହ ସୂର୍ଯ୍ୟକାନ୍ତମଣିଖଚିତ ମାର୍ବଲପ୍ରସ୍ତରର ଗୋଟିଏ ପରଦା ଏହି ସମାଧିଦ୍ୱୟର ଚତୁର୍ଦ୍ଦିଗରେ ବେଷ୍ଟିତ ଅଛି । ସମାଧିର ଚତୁର୍ଦ୍ଦିଗସ୍ଥ ପରଦା, ଭିତ୍ତି ଏବଂ ଖିଲ୍ଲାଣମାନଙ୍କରେ ସର୍ବତ୍ର ନାନାବର୍ଣ୍ଣର ବହୁମୂଲ୍ୟ ପ୍ରସ୍ତରରଚିତ ପୁଷ୍ପମାଳା ବିରାଜିତ ରହିଅଛି ।

ଉକ୍ତ ମାଳାର କାରୁକାର୍ଯ୍ୟ ଏପରି ପରିପାଟୀରେ ଏବଂ ନିପୁଣଭାବରେ ପ୍ରକାଶିତ ହୋଇଅଛି ଯେ, ଦେଖିଲେ ବୋଧହୁଏ ଯେପରି ସଦ୍ୟପ୍ରସ୍ଫୁଟିତ ଉପବନପୁଷ୍ପରେ ମାଳ ଗୁନ୍ଥାଯାଇ ଉକ୍ତ ପ୍ରକାର ମସୃଣପ୍ରସ୍ତର ଉପରେ ବସାଇଦିଆଯାଇଅଛି । ବାସ୍ତବରେ କହିବାକୁ ଗଲେ ଏହି ସମାଧିମନ୍ଦିରର ଆକାର, ବିସ୍ତୃତି, ବୈଚିତ୍ର୍ୟ ଏବଂ ଶିଳ୍ପନୈପୁଣ୍ୟ ଛାଡିଦେଲେ ମଧ୍ୟ ମନୋହର ଉଦ୍ୟାନପରିବେଷ୍ଟିତ ସେହି ସ୍ଥାନଟି ଦେଖିଲାକ୍ଷଣି ମନରେ ଯେଉଁ ଉଦାର ଓ ସ୍ୱର୍ଗୀୟ ଭାବରାଶିର ଉଦ୍ରେକ ହୁଏ ସେଥିରେ ମୁଗ୍ଧ ଓ ତନ୍ମୟ ହୋଇ ଏହାକୁ ପାର୍ଥିବ ନନ୍ଦନକାନନ ଏବଂ ଅସାଧାରଣ ଶୋଭାର ଆଧାର ବୋଲି ସ୍ୱୀକାର ନ କରି ରହିହୁଏ ନାହିଁ ।

ଏହି ସମାଧିମନ୍ଦିରର ନିର୍ମାଣକାର୍ଯ୍ୟ ଶାହାଜାହାନଙ୍କର ପତ୍ନୀ ମମତାଜ-ଜେମାନୀଙ୍କ ମୃତ୍ୟୁର ଅବ୍ୟବହିତ ପରେ ଅର୍ଥାତ୍ ୧୬୨୯ ଖ୍ରୀଷ୍ଟାବ୍ଦରେ ଆରମ୍ଭ ହୋଇ ୧୬୪୮ ଖ୍ରୀଷ୍ଟାବ୍ଦରେ ସମାପ୍ତ ହୋଇଥିଲା । ଏହାର ନିର୍ମାଣ ନିମିତ୍ତ ଶୁକ୍ଳ ମାର୍ବଲପ୍ରସ୍ତର ଜୟପୁର ଏବଂ କାନ୍ଦାହାରରୁ ଏବଂ ଲୋହିତ ପ୍ରସ୍ତର ଫତେପୁରଶିକ୍ରୀ ଓ ମେଓଅଟର ପାହାଡମାନଙ୍କରୁ ଆନୀତ ହୋଇଥିଲା । ଏହି ଅଦ୍ୱିତୀୟ ସମାଧିମନ୍ଦିରର ନିର୍ମାଣ ନିମିତ୍ତ ତିନକୋଟି ଟଙ୍କାରୁ ଅଧିକ ବ୍ୟୟିତ ହୋଇଥିଲା । ଏବଂ ଭିନ୍ନ ଭିନ୍ନ ଦେଶରୁ ସୁନିପୁଣ ଶିଳ୍ପୀମାନେ ଆନୀତ ହୋଇଥିଲେ ।

---

## ମହାତ୍ମା ଚନ୍ଦ୍ରଶେଖର ସିଂହ ସାମନ୍ତ ।

ଭାରତରେ ଦ୍ୱିତୀୟ ଭାସ୍କରାଚାର୍ଯ୍ୟ ମନୀଷୀ ଚନ୍ଦ୍ରଶେଖର ଓଡ଼ିଶାର ଅନ୍ତର୍ଗତ କ୍ଷୁଦ୍ର ଖଣ୍ଡପଡ଼ାରାଜ୍ୟର ରାଜବଂଶରେ ଜନ୍ମଗ୍ରହଣ କରିଥିଲେ । ଯେଉଁ ବର୍ଷ ଏ ଦେଶରେ କନ୍ଧମାନଙ୍କର ଘୋର ନୃଶଂସ ନରବଳିପ୍ରଥା ରାଜାଦେଶରେ ରହିତ ହୋଇଥିଲା ସେହି ଶୁଭବର୍ଷରେ ଅଥବା ୧୮୩୫ ଖ୍ରୀଷ୍ଟାବ୍ଦରେ ଶୀର୍ଷଲିଖିତ ମହାପୁରୁଷଙ୍କର ଆବିର୍ଭାବ ହୋଇଥିଲା । ଏହାଙ୍କର ପୂର୍ଣ୍ଣ ନାମ ସାମନ୍ତ ଶ୍ରୀଚନ୍ଦ୍ରଶେଖର ସିଂହ ହରିଚନ୍ଦନ ମହାପାତ୍ର । ପୂର୍ବରୁ ଆପତ୍ୟହୀନ ହୋଇଥିବାରୁ

ପିତାମାତା ଦେଶପ୍ରଚଳିତ ରୀତିଅନୁସାରେ ତାହାଙ୍କୁ 'ପଠାଣି' ନାମ ଦେଇଥିଲେ । ସେହି 'ପଠାଣି ସାମନ୍ତ'ରେ ସେ ଉତ୍କଳର ଗ୍ରାମେ ପରିଚିତ ।



ମହାତ୍ମା ଚନ୍ଦ୍ରଶେଖର ସିଂହ ସାମନ୍ତ ।

କିନ୍ତୁ ତାହାଙ୍କର କୀର୍ତ୍ତିକଳାପ କେବଳ ଉତ୍କଳରେ ଅଥବା ଭାରତରେ ନୁହେଁ, ସୁଦୂର ସଭ୍ୟଦେଶରେ ବର୍ତ୍ତମାନ ପ୍ରସିଦ୍ଧି ଲାଭ କରିଅଛି ।

ବିଦ୍ୟାଚର୍ଚ୍ଚାରେ ନିତାନ୍ତ ଅନୁର୍ବର ଉତ୍କଳକ୍ଷେତ୍ର ମନୀଷୀ ଚନ୍ଦ୍ରଶେଖରଙ୍କ ଯୋଗେ କିଞ୍ଚିତ୍ ଉନ୍ନତ ହୋଇଅଛି । ଅଜ୍ଞାନାଚ୍ଛନ୍ନ ଅଧଃପତିତ ଉତ୍କଳବାସୀ ବର୍ତ୍ତମାନ ତାହାଙ୍କ ଜୀବନର ଉଜ୍ଜ୍ୱଳ ଆଲୋକ ପାଇ ନବ ଆଶା ଏବଂ ଉଦ୍ୟମରେ ଜାଗରିତ ହେଉଅଛନ୍ତି । ଚନ୍ଦ୍ରଶେଖରଙ୍କର ଅଧ୍ୟବସାୟ ଏବଂ ସାଧନାର କଥା ଶ୍ରବଣ କରି ଆଧୁନିକ ସଭ୍ୟଜଗତ ଚମତ୍କୃତ । ଘୋର ଅନ୍ଧକାରମୟ କ୍ଷୁଦ୍ର ଖଣ୍ଡ-ପଡ଼ାରେ, ଯେଉଁଠାରେ ଆଧୁନିକ ଶିକ୍ଷାର ନାମଗନ୍ଧ ସୁଦ୍ଧା ସେତେବେଳେ ନ ଥିଲା, ସେଥିମଧ୍ୟରେ ଅବତୀର୍ଣ୍ଣ ହୋଇ ଏ ବୈଜ୍ଞାନିକ ଯୁଗରେ ବୈଜ୍ଞାନିକ ସଂଘରେ ସୁପ୍ରତିଷ୍ଠା କରିଇବା ଜଣେ ଆଧୁନିକଶିକ୍ଷାବର୍ଜ୍ଜିତ ପୁରୁଷ ପକ୍ଷରେ କପରି ଅଦ୍ଭୁତ ବ୍ୟାପାର ! ପ୍ରତିଭା ଭିନ୍ନ ଏହା ଆଉ କାହିଁରେ ସମ୍ଭବ ହୋଇ ନ ପାରେ । ଚନ୍ଦ୍ରଶେଖରଙ୍କ ବାଲ୍ୟଶିକ୍ଷା ଗ୍ରାମ୍ୟ ପାଠଶାଳାରେ ହୋଇଥିଲା । ଏଠାରେ ସେ କେବଳ ଅଙ୍କର ଗୃହସ୍ୱ ଉତ୍ତମରୂପେ ଅଭ୍ୟସ୍ତ କରିପାରିଥିଲେ । ତଦନନ୍ତର ପ୍ରାଚୀନରୀତିରେ ଗୃହରେ ସଂସ୍କୃତଶିକ୍ଷା ପ୍ରାପ୍ତ ହୋଇଥିଲେ ଏବଂ ଅଳ୍ପବୟସରେ ସେ ସଂସ୍କୃତ ଶବ୍ଦକୋଷ, ବ୍ୟାକରଣ, କାବ୍ୟ ଓ ପୁରାଣାଦି ଅଧ୍ୟୟନ କରି ସଂସ୍କୃତଭାଷାରେ ବିଶେଷତଃ ସଂସ୍କୃତଶ୍ଲୋକରଚନାରେ ଉତ୍ତମରୂପେ ବ୍ୟୁତ୍ପତ୍ତି ଲାଭ କରିଥିଲେ । ସାମନ୍ତଙ୍କର ପିତା ଏବଂ ପିତୃବ୍ୟ ଉଭୟେ ଜ୍ୟୋତିଃଶାସ୍ତ୍ରରେ ନିପୁଣ ଥିଲେ । ତେଣୁ ବାଲ୍ୟକାଳରୁ ସେ ପିତୃବ୍ୟଙ୍କ ଯତ୍ନରେ ଫଳିତଜ୍ୟୋତିଷ ଶିକ୍ଷା କରିପାରିଥିଲେ । କିନ୍ତୁ ସାମନ୍ତ ସେହି ଜ୍ଞାନରେ ତୃପ୍ତ ନ ହୋଇ କୌତୂହଳ-ବଶତଃ ଆଗେ ଆକାଶର ନକ୍ଷତ୍ରମାନଙ୍କ ସହିତ ପିତୃବ୍ୟଙ୍କ ପ୍ରସାଦରୁ ପରିଚିତ ହେଲେ । ଯେତେବେଳେ ଚନ୍ଦ୍ରଶେଖର ଦେଖିଲେ ଯେ ସନ୍ଧ୍ୟାକାଳରେ ଆକା-ଶର ଯେଉଁ ଅଂଶରେ ନକ୍ଷତ୍ରଟି ଉଦିତ ହୋଇଅଛି, କଣୀଥରେ ବା କଣାନ୍ତରେ ସେଠାରେ ନାହିଁ ଅଥବା ଆଜ ଯେଉଁ ଅଂଶରେ ତାହାର ଉଦୟ ହେଲା, କାଲି ସେଠାରେ ହେଉ ନାହିଁ, ସେତେବେଳେ ଆକାଶମଣ୍ଡଳ ନିରୀକ୍ଷଣ ପ୍ରତି ତାହାଙ୍କର ମନ ସ୍ୱତଃ ଧାବିତ ହେଲା । ତହୁଁ ସେ କୌତୂହଳୀ ହୋଇ ପ୍ରାଚୀନ

ସୂର୍ଯ୍ୟସିଦ୍ଧାନ୍ତ ଓ ସିଦ୍ଧାନ୍ତଶିରୋମଣି ଗ୍ରନ୍ଥ ତାଳପତ୍ରପୋଥିରୁ ପଢ଼ି ତଦନୁକ୍ରମେ ଗ୍ରହନକ୍ଷତ୍ରାଦିର ଉଦୟାସ୍ତ ଓ ଗତିସ୍ଥିତି ଆଦି ପ୍ରତ୍ୟହ ଆକାଶମଣ୍ଡଳ ନିରୀକ୍ଷଣ-ପୂର୍ବକ ନିରୂପଣ କରିବାକୁ ଲାଗିଲେ । ଆଶ୍ଚର୍ଯ୍ୟର କଥା, ସେ ଦେଖିଲେ ଯେ କୌଣସି କୌଣସି ସ୍ଥଳରେ ପ୍ରାଚୀନଗଣନା ତାହାଙ୍କ ଦୃକ୍‌ସିଦ୍ଧଗଣନା ସହିତ ମିଳୁ ନାହିଁ । ତହୁଁ ସେ ରାତ୍ରିଜାଗରଣ ପୂର୍ବକ ଅନବରତ ଏହି ଗଣନାରେ ଆପଣଙ୍କୁ ନିୟୋଜିତ କରିଥିଲେ । ଯେତିକି ନୂତନ ଫଳ ପାଇଲେ ବୃତ୍ତିକି ତାହାଙ୍କର ଉତ୍ସାହ ବର୍ଦ୍ଧିତ ହେବାକୁ ଲାଗିଲା ଏବଂ ସାଧନାର ମାର୍ଗ ଉଜ୍ଜ୍ୱଳ ହେବାକୁ ଲାଗିଲା । ସେ ତ୍ରୟୋବିଂଶତି ବର୍ଷ ବୟସରେ ଏ କାର୍ଯ୍ୟ ଆରମ୍ଭ କରି ସ୍ୱୀୟ ଗଣନାର ଫଳ ନୂତନ ଗ୍ରନ୍ଥରେ ପ୍ରକାଶ କରିବାକୁ ମନ ବଳାଇଲେ ଏବଂ ଗ୍ରହାଦିର ଗତିସ୍ଥିତି ନିରୂପଣ ନିମିତ୍ତ ସ୍ୱୟଂ ହସ୍ତରେ ଖଣ୍ଡେ ମାନଯନ୍ତ୍ର ନିର୍ମାଣପୂର୍ବକ ତଦ୍ଦ୍ୱାରା ନିରୂପଣ କଲେ । ଏହି ଯନ୍ତ୍ର ପରସ୍ପର ପ୍ରତି ସମକୋଣ-ଭାବରେ ସ୍ଥିତ ଇଂରାଜୀ ଟି (T) ଅକ୍ଷର ସଦୃଶ ସମଦୂର-ଛିଦ୍ରବିଶିଷ୍ଟ ଦୁଇଖଣ୍ଡ କାଷ୍ଠରେ ନିର୍ମିତ ହୋଇଥିଲା । ଏହି ଯନ୍ତ୍ର ସାହାଯ୍ୟରେ ୩୪ ବର୍ଷରେ ତାହାଙ୍କର ଦୃକ୍‌ସିଦ୍ଧଗଣନା ସିଦ୍ଧାନ୍ତ ସମାପ୍ତ ହୋଇଥିଲା ଏବଂ ସ୍ୱରଚିତ ଗ୍ରନ୍ଥର ନାମ ସେ ସିଦ୍ଧାନ୍ତଦର୍ପଣ ଦେଇଥିଲେ । ଯେଉଁ ସମୟରେ ଧନାଢ୍ୟଗଣ ନାନାବିଳାସ-ବାସନାରେ ମତ୍ତ, ଯେତେବେଳେ ସର୍ବଶ୍ରେଣୀର ଲୋକେ ନିଦ୍ରାର ଅଙ୍କରେ ଅଭିଭୂତ ସେହି ସମୟରେ ଏବଂ ନିତାନ୍ତ ଅଣାଉତ୍ସାହଜନକ ସ୍ଥାନରେ ରାଜ-ବଂଶଜ ଚନ୍ଦ୍ରଶେଖର ସମସ୍ତ ଭୋଗବାସନା ପରିହାରପୂର୍ବକ ନୀରସ ଆକାଶତତ୍ତ୍ୱ ନିରୂପଣରେ ନିଜ ଜୀବନକୁ ନିୟୋଜିତ କରିଥିଲେ । ଏହା ଅଳ୍ପ ପ୍ରଶଂସାର ବିଷୟ ନୁହେ । ଏହି କଠୋର କର୍ମସାଧନରେ ସେ ଦୁରାରୋଗ୍ୟ ଶୂଳରୋଗରେ ପୀଡିତ ହୋଇ ପଡିଥିଲେ ।

ଭାରତର ଜ୍ୟୋତିର୍ଗଣିତଜ୍ଞଗଣଙ୍କ ମଧ୍ୟରେ ସର୍ଯ୍ୟସିଦ୍ଧାନ୍ତପ୍ରଣେତା ଆର୍ଯ୍ୟ-ଭଟ୍ଟ ପ୍ରଥମ । ସେ ଚତୁର୍ଥ ଶତାବ୍ଦୀରେ ଅବତୀର୍ଣ୍ଣ ହୋଇଥିଲେ । ତତ୍ପରେ ଷଷ୍ଠ ଶତାବ୍ଦୀରେ ପଞ୍ଚସିଦ୍ଧାନ୍ତିକା ଓ ବୃହତ୍‌ସ୍ଫୁଟସିଦ୍ଧାନ୍ତଗ୍ରନ୍ଥର କର୍ତ୍ତା ବରାହମିହିରଙ୍କର ଆବିର୍ଭାବ । ଦ୍ୱାଦଶ ଶତାବ୍ଦୀର ପ୍ରାରମ୍ଭରେ ଭାସ୍କରପ୍ରଥମ ଭାସ୍କରାଚାର୍ଯ୍ୟ ଅବତୀର୍ଣ୍ଣ

ହୋଇ ପୂର୍ବପ୍ରଚଳିତ ମତମାନ ଆଲୋଚନାପୂର୍ବକ ଉତ୍କଳଭାଷାରେ ସ୍ୱମତ ପ୍ରକାଶ କଲେ । ତାହାଙ୍କ ସିଦ୍ଧାନ୍ତଶିରୋମଣିର ଅନୁସରଣ କରି ଏବେ ଊନବିଂଶ ଶତାବ୍ଦୀରେ ଚନ୍ଦ୍ରଶେଖର ପ୍ରାଚୀନମତମାନ ଅନୁଶୀଳନପୂର୍ବକ ତଦୁପରି ସ୍ୱମତ ପ୍ରତିଷ୍ଠିତ କଲେ । କ୍ଷୁଦ୍ର ଖଣ୍ଡପଡ଼ା କୋଣରେ ଏପରି ଉତ୍କଳମଣି ଦେଖା ଦେଇଥିଲେହେଁ ସହଜରେ ସେ ମଣିପ୍ରଭା ସଭ୍ୟସମାଜ ନିକଟକୁ ଆସି ନ ଥାନ୍ତା । ଏଠା କଲେଜର ବିଜ୍ଞାନାଧ୍ୟାପକ ପଣ୍ଡିତ ଶ୍ରୀଯୋଗେଶଚନ୍ଦ୍ରରାୟ ପ୍ରଥମେ ତାହା-ଙ୍କର ପରିଚୟ ପାଇ ଏବଂ କେତେକ ପ୍ରଶ୍ନର ଆଶାତୀତ ଉତ୍ତର ଲାଭ କରି ତାହାଙ୍କୁ ଚିହ୍ନି ପାରିଥିଲେ ଏବଂ ତଦୀୟ ସିଦ୍ଧାନ୍ତ-ପୁସ୍ତକ ପ୍ରକାଶାର୍ଥ ଯତ୍ନବାନ୍ ହୋଇଥିଲେ । ୧୮୯୯ ଖ୍ରୀଷ୍ଟାବ୍ଦରେ ଆଠମଲ୍ଲିକାଧୀଶ୍ୱରଙ୍କ ଆନୁକୂଲ୍ୟରେ ଏହି ଗ୍ରନ୍ଥ ପୁସ୍ତକାକାରରେ ମୁଦ୍ରିତ ହୋଇ ପ୍ରଚାରିତ ହେଲା । ଏହାର ତିନି ବର୍ଷ ପୂର୍ବରୁ ଗବର୍ଣ୍ଣମେଣ୍ଟ ତାହାଙ୍କୁ ମହାମହୋପାଧ୍ୟାୟ ଉପାଧି ଦ୍ୱାରା ସମ୍ମାନ ପ୍ରଦର୍ଶନ କରିଥିଲେ ।

ପୂର୍ବେ ଏ ଦେଶରେ ବଙ୍ଗଦେଶର ପଞ୍ଜିକା ମଧ୍ୟ ଚଳୁଥିଲା । ଚନ୍ଦ୍ରଶେଖରଙ୍କ ଗଣନାନୁସାରେ ସେଥିରେ ଅନେକ ଅମେଳ ଦେଖାଯିବାରୁ ଏବଂ ଜଗନ୍ନାଥଦେବଙ୍କ ସେବାନୀତି ଚଳିବା ପକ୍ଷରେ ବ୍ୟାଘାତ ଘଟିବାରୁ ପ୍ରାୟ ଅର୍ଦ୍ଧଶତାବ୍ଦୀପୂର୍ବେ ପୁରୀଠାରେ ମୁକ୍ତିମଣ୍ଡପସଭାର ପଣ୍ଡିତମାନେ ଏକ ମହାସଭା କରି ପ୍ରଚଳିତ ପଞ୍ଜିକାମାନଙ୍କର ପରୀକ୍ଷା ଓ ଆଲୋଚନା କରିଥିଲେ । ସେଥିରେ ସାମନ୍ତମହୋଦୟଙ୍କ ଦୃକ୍‌ସିଦ୍ଧପଞ୍ଜିକା ନିର୍ଦ୍ଦୋଷ ଥିବାର ପ୍ରମାଣିତ ହେବାରୁ ସେହି କାଳରୁ କେବଳ ତାହାଙ୍କ ଗଣିତ ପଞ୍ଜିକା ଏ ଦେଶରେ ଚଳିଆସୁଅଛି । ନୋହିଲେ ଆଜି ନାନା ପଞ୍ଜିକାର ମତଭେଦରେ ଘରେ ଘରେ ବିଭିନ୍ନ ଦିନରେ ପର୍ବାଦିର ଅନୁଷ୍ଠାନ ହେଉଥାନ୍ତା ! ସିଦ୍ଧାନ୍ତଦର୍ପଣ ମତ ଅନୁଯାୟୀ ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟୋପରାଗ ଗଣନାରେ ଏପର୍ଯ୍ୟନ୍ତ କିଛି ଭ୍ରାନ୍ତି ଦେଖାଯାଇ ନାହିଁ ।

ଚନ୍ଦ୍ରଶେଖରଙ୍କର ଗାର୍ହସ୍ଥ୍ୟଜୀବନ ସୁଖମୟ ନ ଥିଲା । ଏକେ ତ ସେ ଚିରରୁଗ୍ଣ ଥିଲେ, ତହିଁ ଉପରେ ପୁଣି ସର୍ବଗୁଣନାଶୀ ଦାରିଦ୍ର୍ୟର ପୀଡ଼ା । ସାମନ୍ତ ରାଜଜ୍ୟୋତିଷୀ ବୋଲି ସାଧାରଣରେ ପରିଚିତ ହେବାରୁ ତଦୀୟ

କୃତ୍ତିଶୁଣ ରାଜା ତାହାଙ୍କୁ ଅତ୍ୟନ୍ତ ଘୃଣା କରୁଥିଲେ । ବିଶେଷତଃ ତାହାଙ୍କର ଦେଶବ୍ୟାପୀ ଯଶ-ପ୍ରଶଂସା ଶୁଣି ଇତରଜନ ପ୍ରାୟ ଈର୍ଷାକଳୁଷିତ ହୋଇ ନାନାପ୍ରକାରରେ ପଣ୍ଡୁଚିଛ ଦେବାକୁ ଲାଗିଲେ । ଯାହା କିଛି ସାମାନ୍ୟ ଭୂମିବୃତ୍ତି ଥିଲା ସେଥିରେ ତାଙ୍କର ପରିବାରପୋଷଣ ଦୁଷ୍କର ହେଉଥିଲା । ସୁତରାଂ ଚରମକାଳରେ ତାହାଙ୍କୁ ଅନ୍ନକଷ୍ଟ ବିଶେଷରେ ବାଧୁଥିଲା । ସେ ଋଣଭାରରେ ଜଡ଼ିତ ହୋଇ ବଡ଼ ଦୀନହୀନ ଅବସ୍ଥାରେ ଶେଷଜୀବନ ଯାପନ କରୁଥିଲେ । ସିଦ୍ଧାନ୍ତଦର୍ପଣର ଶେଷଶ୍ଳୋକ ପାଠରୁ ଜଣାଯାଏ ସେ ପବିତ୍ର ପୁରୁଷୋତ୍ତମ-କ୍ଷେତ୍ରରେ ଦେହପତନକୁ ପରମସୌଭାଗ୍ୟ ବୋଲି ମଣିଥିଲେ ଏବଂ ମଙ୍ଗଳମୟ ଈଶ୍ୱରଙ୍କର ଆଶୀର୍ବାଦରେ ତାହାଙ୍କର ସେହି ଚିରପୋଷିତ ବାସନା ପୂର୍ଣ୍ଣ ହୋଇଥିଲା । ୧୯୦୪ ଖ୍ରୀଷ୍ଟାବ୍ଦର ଜ୍ୟେଷ୍ଠମାସର ଏକାଦଶୀ ତିଥିରେ ତାହାଙ୍କର ପୁଣ୍ୟମୟ ଆତ୍ମା ସେହି ପୁଣ୍ୟଧାମରେ ଅଶ୍ରୁପ୍ଳୁତ ଦେହ ବିସର୍ଜନ କରି ମହାପ୍ରସ୍ଥାନ କଲା ।

ଚନ୍ଦ୍ରଶେଖରଙ୍କର ଚରିତ୍ର ଅତି ପବିତ୍ର ଥିଲା । ତାହାଙ୍କୁ ଦେଖିଲେ ଋଷି ବୋଲି ମନେ ହେଉଥିଲା । ଦିନର ଅଧିକାଂଶ ସମୟ ତାହାଙ୍କର ଦେବ-ପୂଜାଦି ଧର୍ମାନୁଷ୍ଠାନରେ ବ୍ୟୟିତ ହେଉଥିଲା । ବିନୟ, ସୌଜନ୍ୟ ଓ ସାରଲ୍ୟରେ ସେ ସମସ୍ତଙ୍କୁ ବଶୀଭୂତ କରୁଥିଲେ । ସନ୍ତୁଷ୍ଟତା ଏବଂ ଦାରିଦ୍ର୍ୟ ତାହାଙ୍କ ଜୀବନର ଚିରସହଚର ଥିବାରୁ ତାହାଙ୍କର ଚରିତ୍ର ଅଦ୍ଭୁତ ଉଜ୍ଜ୍ୱଳରୂପେ ପ୍ରକଟିତ ହୋଇଥିଲା । ତେଣୁ ତାହାଙ୍କୁ ଦେଶବାସୀ ତପସ୍ୱିସତ୍ତମ ଏବଂ ଉତ୍କଳର ବ୍ରାହ୍ମଣତୁଳସୀ ଆଖ୍ୟା ପ୍ରଦାନ କରୁଥିଲେ । ଲକ୍ଷ୍ମୀ ସରସ୍ୱତୀ ପରସ୍ପରର ସପତ୍ନୀ ଥିବାର ଯାହା ପୌରାଣିକ ପ୍ରବାଦ ଅଛି ତାହା ଚନ୍ଦ୍ରଶେଖରଙ୍କ ଜୀବନରେ ସୁସ୍ପଷ୍ଟରୂପେ ଦେଖାଯାଇଅଛି ।

---

## ବଡମୂଳ ଘାଟି ।

ବଡମୂଳଘାଟି ଓଡ଼ିଶାର ଦର୍ଶନୀୟ ସ୍ଥାନମାନଙ୍କ ମଧ୍ୟରେ ଅନ୍ୟତମ । ଦଶପଲ୍ଲାରାଜ୍ୟର ଅନ୍ତର୍ଗତ ମହାନଦୀର ଦକ୍ଷିଣକୂଳରେ ଏହା ଅବସ୍ଥିତ ।

ପୁରୀରୁ ଏକ ଜଗନ୍ନାଥସଡ଼କ ଖୋର୍ଦ୍ଧା ଅଞ୍ଚଳ ଅତିକ୍ରମ କରି ଏହି ବାଟେ ସୋନପୁର ଅଭିମୁଖରେ ଯାଇଅଛି । ନଦୀତଟରେ ଦୁରାରୋହଗିରି ଉତ୍ତୁଙ୍ଗ ପ୍ରାଚୀରରୂପେ ଦଣ୍ଡାୟମାନ ଥିବାରୁ ତାହାକୁ କାଟି ଯେଉଁ ବାଟ ପ୍ରସ୍ତୁତ କରା-ଯାଇଅଛି ତାହା ପଦେ ପଦେ ବିପଦସଙ୍କୁଳ । ଏହି ବିଷମ ପଥର ଏକ ପାର୍ଶ୍ୱରେ ଦୁରାରୋହଗିରି ଏବଂ ଅନ୍ୟ ପାର୍ଶ୍ୱରେ ମହାନଦୀର ବିଭୀଷିକାମୟ ଅତଳଦେଶ । ଏହି ବିଷମ ଶିଳାବନ୍ଧୁର ପଥରେ ପଥିକମାନଙ୍କୁ ପାଦ ଟିଣି ଯାତ୍ରା କରିବାକୁ ହୋଇ-ଥାଏ, ଅର୍ଥାତ୍ ଅତଳପତନର ଆଶଙ୍କା ପଦେ ପଦେ ହୃତ୍କମ୍ପ ଜନ୍ମାଇଥାଏ । ମଧ୍ୟେ ମଧ୍ୟେ ଘୋର ଘର୍ଘର ନାଦରେ ଗୋଟିଏ ଗୋଟିଏ ନିର୍ଝରିଣୀ ଶୈଳଦେହରୁ ଝରି ମହାନଦୀରେ ପଡୁଅଛି । ସ୍ଥାନେ ସ୍ଥାନେ ନାନା ବନ୍ୟ ତରୁଗୁଳ୍ମାଦି ଦ୍ୱାରା ପଥ ନିତାନ୍ତ ଦୁର୍ଗମ । ଘନ ଘନ ବ୍ୟାଘ୍ର ଆକ୍ରମଣର ଆଶଙ୍କା ପଥିକପ୍ରାଣ ଶୋଷଣ କରୁଥାଏ । ବଡ଼ମୂଲଘାଟିର ପ୍ରାୟ ପାଞ୍ଚକ୍ରୋଶ ପଶ୍ଚିମରେ ପଦ୍ମତୋଳାଘାଟି । ଏଠାରେ ପଦ୍ମତୋଳାପର୍ବତର ଗାତ୍ର ଭେଦ କରି ପ୍ରାୟ ଅର୍ଦ୍ଧ ଶତାବ୍ଦୀ ହେଲା ଗୋଟିଏ ଗିରିବର୍ତ୍ମ ପ୍ରସ୍ତୁତ ହୋଇଅଛି । ପଥର ବିସ୍ତାର ପ୍ରାୟ ସପ୍ତହସ୍ତ ହେବ । ଏବାଟେ ଯିବାବେଳେ ଯାତ୍ରୀମାନଙ୍କୁ ଆପଦର ଭାର ମସ୍ତକରେ ବହନ କରି ଯିବାକୁ ହୁଏ । କେତେଗୁଡିଏ ନୀଳକଣ୍ଠ ଚିତ୍ରପୁଚ୍ଛ ମୟୂର ଏ ସ୍ଥାନର ଶୋଭା ସମ୍ପାଦନ କରନ୍ତି । ଏହି ଯୋଜନବ୍ୟାପୀ ଗିରିବର୍ତ୍ମରେ ଯିବାକୁ ହେଲେ ଦିନବେଳଛଡ଼ା ଅନ୍ୟ ସମୟରେ ପଥିକମାନେ ସାହସ କରନ୍ତି ନାହିଁ । ବଡ଼-ମୂଲଘାଟି ନିକଟରୁ ମହାନଦୀର ପ୍ରସିଦ୍ଧ ସପ୍ତକ୍ରୋଶୀ ଗଣ୍ଡର ଆରମ୍ଭ ହୋଇଅଛି ।

ସ୍ଥୂଳରେ କହିବାକୁ ଗଲେ ଏ ସ୍ଥାନଟି ଯେତିକି ମନୋହର, ତେତିକି ଭୟଙ୍କର । ଦୁଇ ପାର୍ଶ୍ୱରେ ସୁଦୂରପ୍ରସାରିତ ଶୈଳପ୍ରାଚୀର । ତେଣୁ ମହା-ନଦୀର ସ୍ରୋତ ଅତି ଅପ୍ରଶସ୍ତ ମାର୍ଗରେ ସଂକୁଚିତ ଭାବରେ ପୂର୍ବସାଗରଗାମୀ ହୋଇଅଛି । ଏହି ନୀଳ ଜଳଆସ୍ତରଣ ଉପରେ ନୀଳ ନଭୋମଣ୍ଡଳ ଗିରିରୁ ଚନ୍ଦ୍ରାତପପ୍ରାୟ ବିରାଜିତ । ଦୂରରୁ ଏହା ପ୍ରକୃତିର ସୁନ୍ଦର ଛାୟାମଣ୍ଡପ ପ୍ରାୟ ଦିଶେ । ଏଠାରେ ନଦୀର ଗର୍ଭର ଗଣ୍ଡ-ଧୀର ଓ ଗମ୍ଭୀର । ମଧ୍ୟେ ମଧ୍ୟେ ପ୍ରକାଣ୍ଡ ଶିଳା ବା ଗଣ୍ଡଶୈଳର ସଙ୍ଘାତରେ ତରଙ୍ଗାୟିତ, ଉଭୟ ପାର୍ଶ୍ୱରେ

ଦୂରରୁ ଦର୍‌ବାରଣ ଶୁଣ୍ଡାକାର ପରେ ପରେ ଅବନତଲମ୍ବିତ ଶୈଳ ନାସାବଳୀ ନଦୀଗର୍ଭସ୍ଥ ଦର୍ଶକର ଚକ୍ଷୁକୁ ଅତ୍ୟନ୍ତ କମନୀୟ ଦିଶେ । କିଛିକ୍ଷଣ ସ୍ଥିର-ନେତ୍ରରେ ଦେଖିଲେ ମନେ ହୁଏ ଯେପରି ଦୁଇଧାଡ଼ି ପ୍ରକାଣ୍ଡକଳେବର ହସ୍ତୀ ପରସ୍ପରର ଅଭିମୁଖୀନ ହୋଇ ଶୁଣ୍ଡାଗ୍ରକୁ ଛନ୍ଦାଛନ୍ଦି କରିଅଛନ୍ତି । ଏ ପ୍ରକାରେ ଶୈଳନାସାସଂଯୋଗଦ୍ୱାରା ଦୂରରୁ ନଦୀର ଗତିପଥ ରୁଦ୍ଧ ହୋଇଥିଲା ପ୍ରାୟ ପ୍ରତୀୟମାନ ହୁଏ । କିନ୍ତୁ କିଛିକ୍ଷଣ ଉତ୍ତାରେ ସେହି ସନ୍ଧିସ୍ଥଳରେ ଉପସ୍ଥିତ ହେଲାବେଳକୁ ତାହା ପୃଥକ୍ ବା ଅଲଗ୍ନ ଜଣାଯାଏ, ପୁଣି ଅଦୂର ସମ୍ମୁଖରେ ପୂର୍ବପ୍ରାୟ ଆଉ ଗୋଟିଏ ସନ୍ଧିସ୍ଥଳ ଲକ୍ଷିତ ହୁଏ । ନଦୀଗର୍ଭର ଯେ କୌଣସି ସ୍ଥାନରେ ନୌକାରୁ ସମ୍ମୁଖ ଅଗ୍ର ଏବଂ ପଶ୍ଚାତ୍ ଭାଗକୁ ଚାହିଁଲେ ଦେଖି ପାରିବେ ଯେ ନଦୀର ସେହିପରି ଦୃଷ୍ଟ ଅଂଶ ଉଭୟ ପାର୍ଶ୍ୱରେ ତୋରଣବଦ୍ଧ ଗୋଟିଏ ଜଳା-ଧାରତୁଲ୍ୟ ଦିଶେ । ତୁଳନାରେ ତାହା ନାଳର ଲକ୍ ବା ଅର୍ଗଳୀର ଅନୁରୂପ । ଜ୍ୟୋତ୍ସ୍ନାମୟୀ ରଜନୀରେ ଦୁଇପାର୍ଶ୍ୱର ଶୈଳପ୍ରାଚୀର ଏବଂ ଅଗ୍ରପଶ୍ଚାତ୍ ଦୃଶ୍ୟ-ମାନ ଶୈଳାଗ୍ରତୋରଣର ମଧ୍ୟସ୍ଥିତ ନଦୀବକ୍ଷ ଶୁଭ୍ର ସୁରଧୂନୀସ୍ରୋତପ୍ରାୟ ନୟନା-ଭିରାମ ଦିଶେ । ଭାବୁକ କବି ସେତେବେଳେ ଏହାକୁ ଅପୂର୍ବ ବିହାରଯୋଗ୍ୟ ସ୍ୱର୍ଗର କେଳିସରୋବର ନ ଭାବି ରହି ପାରିବେ ନାହିଁ । ଦକ୍ଷିଣରେ ଦଶପଲ୍ଲାର ଅସୁରଖୋଲ୍, ଶୂଳଖୋଲ, ହାତୀଭଙ୍ଗା ଆଦି ବହୁଶୃଙ୍ଗବିଶିଷ୍ଟ ଶୈଳମାଳାର ତଳେ ଘୋରକାନ୍ତାରାଚ୍ଛନ୍ନ ଯୋକ୍ରୁ ଗିରିଉସ୍ର କୁଞ୍ଚିତ କୁଟିଳ ଗତିରେ ପଶ୍ଚିମାଭିମୁଖ ହୋଇଅଛି । ଏହି ପାର୍ଶ୍ୱର ପାର୍ବତ୍ୟ ଦ୍ରୁମାବଳୀ ମଧ୍ୟରେ ଏକପ୍ରକାର କ୍ଷୁଦ୍ର-ଫଳ ରସାଳବୃକ୍ଷ ବହୁଳ ଦେଖାଯାଏ । ସନ୍ଧ୍ୟାଗମର ବହୁକ୍ଷଣ ପୂର୍ବରୁ ଏହି ଶୈଳପ୍ରାଚୀର ଅନ୍ତରାଳରେ ସୂର୍ଯ୍ୟ ପ୍ରଚ୍ଛନ୍ନ ରହି ହଠାତ୍ ମହାଚ୍ଛାୟାପାତରେ ନଦୀଗର୍ଭ ତମସାଚ୍ଛନ୍ନ କରି ସନ୍ଧ୍ୟାଭ୍ରମ ଜନ୍ମାଇଦିଏ । କିନ୍ତୁ ଅପର ପାର୍ଶ୍ୱର ଗିରି-ଶୃଙ୍ଗକୁ ରବିକରଉଦ୍ଭାସିତ ଦେଖିଲାକ୍ଷଣି ସେ ଭ୍ରମ ଦୂର ହୋଇଯାଏ । ଉତ୍ତର ପାର୍ଶ୍ୱରେ ବାଇଗଣି ଆଦି ଲଗ୍ନଶୈଳମାଳାର ପଦତଳସ୍ଥିତ ନୀରନ୍ଧ୍ର ଭୀଷଣ ଅରଣ୍ୟ ଦେଖିଲେ ଦର୍ଶକର ଦୃଷ୍ଟି ପ୍ରଥମେ ସ୍ତବ୍ଧଭାବ ଧାରଣ କରେ ଏବଂ ପଶ୍ଚାତ୍ ଅତି ଧୀରଗତିରେ ପ୍ରତିପଦଶଙ୍କାକୁଳଭାବରେ, ଅଭ୍ୟନ୍ତର ପ୍ରଦେଶକୁ

ପ୍ରବେଶ କରେ । ଯେଉଁଠାରେ ରବିରଶ୍ମି ପ୍ରବେଶ କରି ପାରୁ ନାହିଁ ସେଠାରେ ଦର୍ଶକର ଦୃଷ୍ଟିରେଖା ଅବା କେତେଦୂର ଯିବ ? କବିଙ୍କ ଭାଷାରେ ବୋଲାଯାଇ ପାରେ "ହସ୍ତିକାଳି ଶୁଭି ନାହିଁ ଏଥି କାଷ୍ଠଶୀର-କୁଠାର ଶବଦ ।" କୂଳଦେଶରେ କେତେ ଶୁଭ୍ରକାୟ କକୁଭଦ୍ରୁମ ସ୍ରୋତଧୌତମୂଳରେ ଉଲ୍ଲମ୍ବ ହୋଇ ନିଜ ନିଜ ପତନର ଅବଶ୍ୟମ୍ଭାବିତା ଜଣାଇ ଦେଉଅଛନ୍ତି । ବର୍ଷାକାଳରେ ଏହିଠାରୁ ମହାନଦୀ ସ୍ରୋତରେ ଶତ ଶତ ବୃକ୍ଷ ଶାଖା ଗୁଳ୍ମାଦି ବହୁଦୂରକୁ ଭାସିଆସେ । ମଧ୍ୟେ ମଧ୍ୟେ ଗୋଟିଏ ଗୋଟିଏ କ୍ଷୁଦ୍ର ନିର୍ଝରିଣୀ ଏ ଭୀଷଣ ସ୍ଥଳର ଜଳ ବହି-ଆଣି ନଦୀ ଗର୍ଭଯାଏ ସଂକୀର୍ଣ୍ଣ ବାଟ ଫିଟାଇଅଛି । ଏ ସ୍ଥାନର ଗହନ ତରୁ-ଗୁଳ୍ମକୁଞ୍ଜ କେକୀକୁକ୍କୁଟକୋଚଲାଖାଇ ପ୍ରଭୃତି ନାନାବିଧ ପକ୍ଷୀଙ୍କର କଳରବରେ ସର୍ବଦା ମୁଖରିତ ଏବଂ ନାନାବର୍ଣ୍ଣ ପୁଷ୍ପପଲ୍ଲବାଙ୍କୁରରେ ଶବଳିତ । ଉଭୟ କୂଳ ଶ୍ୱାପଦସଙ୍କୁଳ, ସୁତରାଂ ସର୍ବଦା ବିଭୀଷିକାମୟ । ଏହି ବାଇଶଣି ପାହାଡ଼କୁ ଦେଖିଲେ ଶୁଷ୍କ ପ୍ରସ୍ତରସ୍ତୁପ ଯେପରି ତାହା ସ୍ତରେ ? ଛେଦିତ ହୋଇଅଛି । ତେଣୁ ଏ ବିଷୟରେ ଅଦ୍ୟାପି ଏହି କିମ୍ବଦନ୍ତୀ ପ୍ରଚଳିତ ଅଛି ଯେ, ପୂର୍ବ-କାଳରେ ସୁକାନ୍ତ ମହର୍ଷିଙ୍କ ତପସ୍ୟାପ୍ରଭାବରେ ଯେତେବେଳେ ମହାନଦୀର ସ୍ରୋତ ପୂର୍ବମୁଖରେ ପ୍ରବାହିତ ହୋଇ ଆସିଲା, ସେତେବେଳେ ଏହି ପର୍ବତରେ ବାଧାପ୍ରାପ୍ତ ହୋଇଥିଲା । ତହିଁ ଋଷିଙ୍କ ସ୍ତୁତିରେ ତୁଷ୍ଟ ହୋଇ ବଜ୍ରଧର ଇନ୍ଦ୍ର ବଜ୍ରାଘାତଦ୍ୱାରା ଏହି ପର୍ବତକୁ ଦ୍ୱିଧା ବିଭକ୍ତ କରାଇ ନଦୀର ଗତିପଥ ଫିଟାଇ ଦେଇଥିଲେ । ବଜ୍ରାରଣକାଳୀନ ସ୍ଖଳିତ ଶିଳାପୁଞ୍ଜ ନଦୀଗର୍ଭରେ ପଡ଼ିଥିବାରୁ ଏଠାର ନଦୀଶଯ୍ୟା ଅତ୍ୟନ୍ତ ଶିଳାବନ୍ଧୁର ହୋଇଅଛି ।

---

## ଚନ୍ଦ୍ର ସୂର୍ଯ୍ୟ କଳି ।

ବୃଥାଗର୍ବିତ ତପନ
ତାଲୁକୁ ତଣ୍ଡ କରଣ
ଅନଳ କଣ୍ଠରେ      ପଡ଼ିଲା ପସରେ
ବିକଳ ଏ ଜୀବଗଣ ।

ଦେଖ ମୋ ହିମ କିରଣ
କରଇ ସୁଧା ବର୍ଷଣ
ପିଇ ଚକୋରେ   ମହା ଉଲ୍ଲାସରେ
ହରଷେ ମଗ୍ନ କେସନ!

"ହିମାଂଶୁ, ତୁ ମୋର ଦାସ
ମୋ ଯୋଗୁଁ ତୋ ପରକାଶ
ମୋହ ଅନ୍ଧକାରେ   କାହିଁ ଦ୍ୟୁଲୋକରେ
ଦେଖାଇବୁ ସ୍ନିଗ୍ଧ ହାସ?

ପାଇ କିରଣ ମୋହର
ଜୀବନ୍ତ ଏ ଚରାଚର
ମୁଁ ବିନା କ୍ଷଣକେ   ଦେଖିବ ଭୂଲୋକେ
ଦୃଶ୍ୟ ଭୟଙ୍କର ।

ମୋହ ଯୋଗୁଁ ସିନା ତୋର
ବଢେ ଅହମିକା ଘୋର
ତୋହ ପରି ଲକ୍ଷେ   ଲକ୍ଷେ ଚନ୍ଦ୍ର କକ୍ଷେ
ଭ୍ରମନ୍ତି ସଗର୍ବେ ମୋର ।"

ସଗର୍ବେ ଭାଷଇ ବଧୁ
କିପାଁ ଏଡେ ଗର୍ବ ସିନ୍ଧୁ!
ତୁମ୍ଭର ଏ ତେଜ   କାହିଁ ହେଲା ହେଜ
ତୁମ୍ଭେ ପୁଣି କାହିଁ ଇନ୍ଦୁ!

ଅନନ୍ତ ଆକାଶେ କୋଟି
କୋଟି ଛନ୍ତି ଦିବ୍ୟ ଜ୍ୟୋତି,
କେ ବଡ଼ କେ ସାନ   ଏ କାର ଭିଆଣ
ସବୁ ତ ତାଙ୍କର ଜ୍ୟୋତି ।

# ଗାଲିଲିଓ ।

ଖ୍ରୀଷ୍ଟୀୟ ୧୫୬୪ ଅବ୍ଦରେ ସୁବିଖ୍ୟାତ ଜ୍ୟୋତିର୍ବେତ୍ତା ଗାଲିଲିଓ ଇଟାଲୀର ଅନ୍ତର୍ଗତ ପିସାନଗରରେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କର ପିତା ଜଣେ ସମ୍ଭ୍ରାନ୍ତ ବ୍ୟକ୍ତି ଥିଲେ । ବାଲ୍ୟଶିକ୍ଷା ସମାପ୍ତ ହେବା ଉତ୍ତାରେ ସେ ପୁତ୍ରଙ୍କୁ



ଗାଲିଲିଓ ।

ଚିକିତ୍ସାବିଦ୍ୟା ଶିକ୍ଷାଲାଗି ସ୍ଥାନୀୟ ଉଚ୍ଚବିଦ୍ୟାଳୟକୁ ପ୍ରେରଣ କରିଥିଲେ । କିନ୍ତୁ ବାଲ୍ୟକାଳରୁ, ଗାଲିଲିଓଙ୍କର ମନ ବିଶେଷତଃ ଦର୍ଶନଶାସ୍ତ୍ର ପ୍ରତି ଅକୃଷ୍ଟ

ହୋଇଥିଲା । ପଠକଣାରେ ସେ ପୂର୍ବ ବର୍ଣ୍ଣନାନୁଯାୟୀ ଅରିଷ୍ଟଟଲଙ୍କର ମତକୁ ଅଯୌକ୍ତିକ ବୋଲି ଧାରଣ କରିଥିଲେ । ଗଣିତଶାସ୍ତ୍ରରେ ଉତ୍ତମ ବ୍ୟୁତ୍ପତ୍ତି ଲାଭ କରିବାରୁ ସେ ପ୍ରଥମେ ସେହି ବିଦ୍ୟାଳୟର ଗଣିତାଧ୍ୟାପକ ପଦରେ ନିଯୁକ୍ତ ହୋଇଥିଲେ । ସେକାଳରେ ଅରିଷ୍ଟଟଲ ପ୍ରଭୃତି ପଣ୍ଡିତମାନେ ଯୁକ୍ତିଦ୍ୱାରା ଏହା ପ୍ରମାଣିତ କରିଥିଲେ ଯେ ଦ୍ରବ୍ୟାଦିର ଗୁରୁତ୍ୱ ବା ଭାର ଅଛି ବୋଲି ତାହା ଭୂତଳରେ ପତିତ ହୁଏ ଏବଂ ଏହି ଗୁରୁତ୍ୱର ତାରତମ୍ୟ ଅନୁସାରେ ଦ୍ରବ୍ୟର ଅଗ୍ରପଶ୍ଚାତ୍ ପତନ ହୋଇଥାଏ । ଯୁବକ ଗାଲିଲିଓ ଏହିଠାରେ ଅଯୌକ୍ତିକତା ସପ୍ରମାଣ କରିବା ନିମିତ୍ତ ଅଧ୍ୟାପକବର୍ଗଙ୍କୁ ପ୍ରତ୍ୟକ୍ଷ ପ୍ରକୃତିର ନିୟମମାନ ପ୍ରଦର୍ଶନ କରାଇବାକୁ ଲାଗିଲେ । ଏକଦା ସେ ସମବେତ ନଗରବାସୀମାନଙ୍କ ସମକ୍ଷରେ ନଗରସ୍ଥ ପ୍ରଧାନ ଦେବାଳୟର ଉପରୁ ପୁନଃ ପୁନଃ ପରୀକ୍ଷାଦ୍ୱାରା ଦେଖାଇଲେ ଯେ ଗୁରୁତ୍ୱ ପତନର ନିୟାମକ ନୁହେ । ଏହା ଭିନ୍ନ କାରଣରୁ ପୃଥିବୀରେ ପତନ ହୁଏ । ଏପ୍ରକାର ନୂତନ ସଂବାଦରେ ଅରିଷ୍ଟଟଲଙ୍କର ମତବାଦୀମାନେ ତାହାଙ୍କର ପ୍ରତିକୂଳ ହୋଇପଡ଼ିଲେ । ସେମାନଙ୍କ ବିରୁଦ୍ଧାଚରଣରେ ଗାଲିଲିଓ କେବଳ ଉକ୍ତ ପଦରୁ ବହିଷ୍କୃତ ହୋଇ ସ୍ଥିର ରହି ପାରିଲେ ନାହିଁ । ଅତଏବ ତାହାଙ୍କୁ ସେ ନଗର ପରିତ୍ୟାଗପୂର୍ବକ ପଳାୟନ କରିବାକୁ ହୋଇଥିଲା । ଇତ- ସ୍ତତଃ କିଛିକାଳ କଷ୍ଟରେ ଯାପନ କରି ସେ ପେଡୁଆ ନାମକ ସ୍ଥାନର ବିଦ୍ୟା- ଳୟରେ ସେହି ଗଣିତାଧ୍ୟାପକ ପଦରେ ନିଯୁକ୍ତ ହେଲେ । ଏଠାରେ ମଧ୍ୟ ସେ ନୂତନତ୍ୱ ପ୍ରଦର୍ଶନ କରିଥିଲେ । ସେ ସମୟରେ ୟୁରୋପୀୟ ପଣ୍ଡିତମାନେ ଲାଟିନ୍ ଭାଷାରେ ଉପଦେଶ ପ୍ରଦାନ କରୁଥିଲେ । କିନ୍ତୁ ଗାଲିଲିଓ ଅପୂର୍ବସାହସରେ ଇଟାଲୀୟ ଭାଷାରେ ଉପଦେଶ ଦେବାକୁ ଆରମ୍ଭ କରିଥିଲେ । ଏହିଠାରେ ସେ ଅଷ୍ଟାଦଶବର୍ଷକାଳ ଅବସ୍ଥାନକରି ପଦାର୍ଥବିଦ୍ୟାବିଷୟରେ ଯେଉଁ ନୂତନ ତତ୍ତ୍ୱମାନ ଆବିଷ୍କାର କରିଥିଲେ ତାହା ଅସଙ୍କୁଚିତଚିତ୍ତରେ ଶିଷ୍ୟମାନଙ୍କୁ ଶିକ୍ଷା ଦେଉଥିଲେ ।

ଗାଲିଲିଓ ଗୋଟିଏ ବୈଜ୍ଞାନିକଯନ୍ତ୍ର ଉଦ୍ଭାବନ କରିବାକୁ ପ୍ରସ୍ତୁତ ହେଉ- ଥିଲେ, ଏହିସମୟରେ ଶୁଣିଲେ ଜଣେ ଓଲନ୍ଦାଜ ଗୋଟିଏ ନୂତନଯନ୍ତ୍ର ନିର୍ମାଣ

କରଅଛନ୍ତି । ଏହା ଶୁଣିବାମାତ୍ରେ ସେ ଯନ୍ତ୍ରଟି କି କି ଉପାଦାନରେ ଗଠିତ ବୁଝିନେଲେ ଏବଂ କାଳ ବିଳମ୍ବ ନ କରି ତଦପେକ୍ଷା ବହୁଗୁଣରେ ଉତ୍କୃଷ୍ଟ ଗୋଟିଏ ଯନ୍ତ୍ର ନିର୍ମାଣ କଲେ । ଏହିରୂପେ ୧୬୦୯ ଖ୍ରୀଷ୍ଟାବ୍ଦରେ ଲୋକହିତକର ଦୂରବୀକ୍ଷଣଯନ୍ତ୍ରର ସୃଷ୍ଟି ହୋଇଥିଲା । ଗାଲିଲିଓ ଏହି ନଳାକାର ଦୃଷ୍ଟିପୋଷକ ଯନ୍ତ୍ରରେ ଆକାଶମଣ୍ଡଳ ନିରୀକ୍ଷଣକରି ନିର୍ଦ୍ଧାରଣ କଲେ ଯେ ଚନ୍ଦ୍ରମଣ୍ଡଳର ଉପରିଭାଗ ଉଚ୍ଚାବଚ, ଉଜ୍ଜ୍ୱଳ ଛାୟାପଥ କେତେଗୁଡ଼ିଏ ନକ୍ଷତ୍ରର ଗୁଚ୍ଛ ମାତ୍ର, ସୂର୍ଯ୍ୟମଣ୍ଡଳ ସାମୟିକ କୃଷ୍ଣଚିହ୍ନ ଲାଞ୍ଛିତ, ବୃହସ୍ପତି ଉପଗ୍ରହ ଚତୁଷ୍ଟୟ ବେଷ୍ଟିତ, ଶୁକ୍ରଗ୍ରହ ଚନ୍ଦ୍ରପ୍ରାୟ ହ୍ରାସବୃଦ୍ଧିଶୀଳ ଏବଂ ଶନୈଶ୍ଚର ଦ୍ୱିଉପକ୍ଷଯୁକ୍ତ ।

୧୬୧୧ ଖ୍ରୀଷ୍ଟାବ୍ଦରେ ସେ ଏହି ବିଷୟକ ଗବେଷଣାରେ ପ୍ରବୃତ୍ତ ହୋଇଥିଲେ । ସୌଭାଗ୍ୟକ୍ରମେ ସେତେବେଳେ ସେ ଜନ୍ମଭୂମିର ଅଧୀଶ୍ୱରଙ୍କ ଦ୍ୱାରା ଅନୁରୁଦ୍ଧ ହୋଇ ପିସାନଗରକୁ ପ୍ରତ୍ୟାଗମନ କଲେ ଏବଂ ଅଧିକ ବେତନରେ ପୋକ୍ତ ଗଣିତାଧ୍ୟାପକ ପଦ ପୁନର୍ବାର ଗ୍ରହଣ କଲେ । ଏହିଠାରେ ତାହାଙ୍କର ନବୋଦ୍ଭାବିତ ମତମାନ ପ୍ରଥମେ ପ୍ରଚାରିତ ହେଲା, କିନ୍ତୁ ପୂର୍ବାଚାର୍ଯ୍ୟ କୋପର୍ନିକସ୍ ଏସବୁ ତତ୍ତ୍ୱ ପ୍ରକାଶ ଦ୍ୱାରା ଯେଉଁସବୁ ନିଗ୍ରହ ସୌଭାଗ୍ୟକ୍ରମେ ଅତିକ୍ରମ କରିପାରିଥିଲେ ସେସବୁ ଗାଲିଲିଓଙ୍କୁ ପ୍ରଭୂତଭାବରେ ସହିବାକୁ ହୋଇଥିଲା । ଏହି ସମୟରେ ସେ ଗୋଟିଏ ନୂତନ ଗ୍ରନ୍ଥ ପ୍ରଣୟନପୂର୍ବକ ପ୍ରଚାର କରିଥିଲେ ଯେ ଏଥିରେ ଯେଉଁ ସତ୍ୟ ବା ତଥ୍ୟମାନ ପ୍ରକାଶିତ ହେଲା ତଦ୍ଦ୍ୱାରା କୋପର୍ନିକସଙ୍କ ପ୍ରଦର୍ଶିତ ପଦ୍ଧତିର ଯାଥାର୍ଥ୍ୟ ପ୍ରମାଣିତ ହୋଇଅଛି । ଏହି ଗ୍ରନ୍ଥ ପ୍ରଚାର ଦ୍ୱାରା ଫଳ ଏହି ହେଲା ଯେ ଧର୍ମଯାଜକମାନେ ତାହାଙ୍କୁ ଧର୍ମଦ୍ରୋହୀ ବୋଲି ଘୋଷଣା କରି ରାଜଦ୍ୱାରରେ ଅଭିଯୋଗ କଲେ ଏବଂ ତହିଁର ଫଳରେ ୧୬୧୫ ଖ୍ରୀଷ୍ଟାବ୍ଦରେ ରୋମ ନଗରର ଧର୍ମସଭାରେ ତାହାଙ୍କୁ ଉପସ୍ଥିତ ହୋଇ ଅନିଚ୍ଛାରେ ସୁଦ୍ଧା ପ୍ରତିଜ୍ଞା କରିବାକୁ ହେଲା "ଆଉ ଏପରି ବିପ୍ଳବକାରୀ ମତକୁ କଦାପି ମୁଖକୁ ଆଣିବି ନାହିଁ ।" ସଭାଧ୍ୟକ୍ଷମାନେ ପୁଣି ଏତକରେ ସନ୍ତୁଷ୍ଟ ନ ହୋଇ ତାହାଙ୍କର ପାଞ୍ଚମାସ କାରାବାସଦଣ୍ଡ ବିଧାନ କରିଥିଲେ । ରାଜ୍ୟେଶ୍ୱର ଏଥିରେ ବାଧା ଦେଇ ନ ଥିଲେ ତାହାଙ୍କୁ ଅଧିକ ଦୁଃସହ ନିଗ୍ରହ ସହିବାକୁ ହୋଇଥାନ୍ତା ।

ଗାଲିଲିଓ ପୂର୍ବକୃତ ପ୍ରତିଜ୍ଞାନୁସାରେ କେତେକ ବର୍ଷ ଏପ୍ରକାର ଗବେଷଣାରୁ କ୍ଷାନ୍ତ ହୋଇଥିଲେ । କିନ୍ତୁ କୋପର୍ନିକସ ପ୍ରଦର୍ଶିତ ପଦ୍ଧତିର ସତ୍ୟତାର ବିବରଣ ପୃଥିବୀରେ ପ୍ରଚାରିତ କରିବା ପାଇଁ ତାହାଙ୍କର ପ୍ରାଣ ବ୍ୟାକୁଳ ହୋଇଉଠିଲା । ତହିଁ ସେ କୁସଂସ୍କାରଗ୍ରସ୍ତ ବିରୁଦ୍ଧବାଦୀଙ୍କ ବିଶେଷ ଭୟରେ ସ୍ୱମତ ପ୍ରକାଶ୍ୟଭାବରେ ଜ୍ଞାପନ ନ କରି ତିନିଜଣ ବନ୍ଧୁଙ୍କ କଥୋପକଥନ ଛଳରେ ଗୋଟିଏ ଗ୍ରନ୍ଥ ରଚନା କଲେ । ତନ୍ମଧ୍ୟରୁ ପ୍ରଥମ ବ୍ୟକ୍ତି ମୁଖରେ କୋପର୍ନିକସଙ୍କର ମତ, ଦ୍ୱିତୀୟ ଜଣକ ମୁଖରେ ଆରିଷ୍ଟଟଲଙ୍କ ଅପରିପକ୍ୱ ମତ ଏବଂ ତୃତୀୟ ଜଣକ ମୁଖରେ ଏହି ଦୁଇ ମତର ଯୁକ୍ତିତର୍କ ସହିତ ଆଲୋଚନା ଏବଂ ପ୍ରଥମୋକ୍ତ ମତର ବଳବତ୍ତା ଓ ଅଭ୍ରାନ୍ତତା ପ୍ରତିପାଦନ । ଏ ସମୟକୁ ତାହାଙ୍କର ବୟସ ୭୦ରୁ ଊର୍ଦ୍ଧ୍ୱ ହୋଇଥିଲା । ଗାଲିଲିଓ ୧୬୩୦ ଖ୍ରୀଷ୍ଟାବ୍ଦରେ ରୋମ ଯାତ୍ରା କରି ତତ୍ରତ୍ୟ ଧର୍ମାଧ୍ୟକ୍ଷମାନଙ୍କ ପ୍ରସାଦରୁ ଏହି ଗ୍ରନ୍ଥ ମୁଦ୍ରଣର ଅନୁମତି ପ୍ରାପ୍ତ ହେଲେ । ମୁଦ୍ରିତ ଗ୍ରନ୍ଥ ସେହି ନଗରରେ ପ୍ରଚାରିତ ହେଲାକ୍ଷଣି ଆରିଷ୍ଟଟଲଙ୍କ ମତବାଦୀମାନେ ତାହାଙ୍କୁ ଚାରିଆଡ଼ୁ ଆକ୍ରମଣ କରିବାକୁ ଲାଗିଲେ ଏବଂ ସେହି ଗ୍ରନ୍ଥକୁ ଧର୍ମବିପ୍ଳବ ପୋଷକ ବୋଲି ସ୍ଥିର କରି ସେଠା ଧର୍ମସଭାରେ ଉପସ୍ଥିତ ହେବା ପାଇଁ ଗ୍ରନ୍ଥକାରଙ୍କ ଉପରେ ଆଜ୍ଞା ପ୍ରଚାର କଲେ ।

ଗାଲିଲିଓ ସେ ସମୟରେ ନିତାନ୍ତ ବୃଦ୍ଧ, ଜଣେ ପରମ ବନ୍ଧୁଙ୍କ ବିୟୋଗରେ ପୁଣି ଅତ୍ୟନ୍ତ ଅସହାୟ ଅବସ୍ଥାରେ ଥିଲେ । ତଥାପି ଏହି ବିପକ୍ଷଦଳର ଉତ୍ପୀଡ଼ନରେ ତାହାଙ୍କୁ ୧୬୩୩ ଖ୍ରୀଷ୍ଟାବ୍ଦରେ ଶୀତକାଳରେ ରୋମରେ ଉପସ୍ଥିତ ହେବାକୁ ପଡ଼ିଲା । ଧର୍ମାଧ୍ୟକ୍ଷମାନେ ତାହାଙ୍କୁ ଦେଖିବାମାତ୍ରେ କିଛି ବିଚାର ନ କରି କାରାଗାରରେ ଅବରୁଦ୍ଧ କଲେ । କେତେ ମାସ ସେଥିରେ ଅବସ୍ଥାନ କଲା ଉତ୍ତାରେ ତାହାଙ୍କୁ ବିଚାରପତିଙ୍କ ସମ୍ମୁଖକୁ ଆଣି ନିମ୍ନୋକ୍ତରୂପେ ଅଦ୍ଭୁତ ଦଣ୍ଡ ବିଧାନ କରାଯାଇଥିଲା । "ତୁମ୍ଭଙ୍କୁ ଆମ୍ଭମାନଙ୍କ ସମକ୍ଷରେ ଜାନୁପାତପୂର୍ବକ ବାଇବେଲ ଗ୍ରନ୍ଥ ସ୍ପର୍ଶ କରି କହିବାକୁ ହେବ ଯେ, ତୁମ୍ଭେ ପୃଥିବୀର ଗତିପ୍ରକୃତି ବିଷୟରେ ଯେଉଁ ଯେଉଁ ନୂତନ ସିଦ୍ଧାନ୍ତ କରିଅଛ ସେସବୁ ଅଶ୍ରଦ୍ଧେୟ, ଭ୍ରମାତ୍ମକ ଏବଂ ଧର୍ମବିଦ୍ୱେଷୀ ।" ଅସହାୟ ଗାଲିଲିଓ ସେ ମହା-

ସଙ୍କଟରେ ଚିତ୍ତର ଦୃଢ଼ତା ରକ୍ଷା କରିବାର ଉପାୟ ନ ପାଇ ନିତାନ୍ତ ଅନିଚ୍ଛାରେ ସେ ପ୍ରତିଜ୍ଞା ବାଣୀ ଉଚ୍ଚାରଣ କରିଥିଲେ । କିନ୍ତୁ ଗାତ୍ରୋତ୍ଥାନ କରିବା ମାତ୍ରେ ଆତ୍ମପ୍ରତ୍ୟୟର ବିପରୀତ କାର୍ଯ୍ୟ କଲେ ବୋଲି ଭାବି ତାହାଙ୍କ ମନରେ ନିରତିଶୟ ଘୃଣା ଏବଂ ଅନୁତାପ ଜନ୍ମିଲା । ତହୁଁ ସେ ରୋଷସହକାରେ ପୃଥିବୀ ପୃଷ୍ଠରେ ପଦାଘାତ କରି ଉଚ୍ଚସ୍ୱରରେ କହିଲେ "ଏବେ ସୁଦ୍ଧା ଏ ଘୂରୁ-ଅଛି ?" ବିଚାରପତିମାନେ ଗାଲିଲିଓଙ୍କର ନାସ୍ତିକ ବୁଦ୍ଧିର ପୁନରାଗମ ଦେଖି ଏହି ଗୁରୁତର ଦଣ୍ଡବିଧାନ କଲେ "ତୁମ୍ଭଙ୍କୁ ଯାବଜ୍ଜୀବନ କାରାଗାରରେ ରହି-ବାକୁ ହେବ ଏବଂ ତିନିବର୍ଷଯାଏ ପ୍ରତି ସପ୍ତାହରେ ଅନୁତାପବ୍ୟଞ୍ଜକ ଗାଥା ପାଠ କରିବାକୁ ହେବ ।" ସୁଖର ବିଷୟ ଯେ ତନ୍ମଧ୍ୟରୁ କେହି କେହି ଦୟାଳୁ ସଭ୍ୟସଦ୍ ତାଙ୍କର ବାର୍ଦ୍ଧକ୍ୟ ଦୃଷ୍ଟିରେ ସୁବିଚାର କରି କହିଲେ "ଏପରି ଗୁରୁ-ତର ଦଣ୍ଡ ସେ ସହିପାରିବେ ନାହିଁ, ବରଂ ଏଠାରୁ ନିର୍ବାସିତ କରି ଫ୍ଲୋରେନ୍ସ ନଗର ନିକଟସ୍ଥ କୌଣସି ନିଭୃତ ସ୍ଥାନରେ ତାହାଙ୍କ ଅବସ୍ଥାନ ନିର୍ଦ୍ଦେଶ କରାଯାଉ ।"

ଏହି ବନ୍ଧୁବାନ୍ଧବଶୂନ୍ୟ ସ୍ଥାନରେ ବାସ କରି ସେପରି ବାର୍ଦ୍ଧକ୍ୟରେ ସୁଦ୍ଧା ଗାଲିଲିଓ ଚନ୍ଦ୍ରାଦି ଜ୍ୟୋତିଷ୍କ ବିଷୟରେ କେତେକ ନୂତନ ତତ୍ତ୍ୱ ଆବିଷ୍କାର କରିଥିଲେ । ସର୍ବଦା ଆକାଶମଣ୍ଡଳ ନିରୀକ୍ଷଣ କରି ସେ ଏହିଠାରେ ନେତ୍ର-ରୋଗରେ ପୀଡ଼ିତ ହେଲେ । ଗୋଟିଏ ଚକ୍ଷୁ ନଷ୍ଟ ହୋଇ ଅନ୍ୟଟି ପ୍ରାୟ ପରେ ପରେ ନଷ୍ଟ ହୋଇଗଲା । ଚରମଦଶାରେ ସେ ଏହି ଦୃଷ୍ଟିହୀନତା, ବଧିରତା ଏବଂ ଅନିଦ୍ରାର ତୀବ୍ର ବେଦନାରେ ଅତି କଷ୍ଟରେ ଦିନଯାପନ କରିଥିଲେ । କିନ୍ତୁ ସେପର୍ଯ୍ୟନ୍ତ ସେ ଅନଳସ ଓ କର୍ମନିଷ୍ଠ ଥିଲେ । ୭୪ ବର୍ଷ ବୟସରେ ସେ ଏହିପରି ପ୍ରକାଶ କରିଥିଲେ—"ମୁଁ ଏହି ଅନ୍ଧ ଅବସ୍ଥାରେ ଥରେ ଆଗେ ବର୍ଣ୍ଣିତ ଦୃଷ୍ଟାନ୍ତର ବିଷୟ ଭାବେ, ପରେ ଆଉ ଯେଉଁ ବିଷୟ । ଏବେ ଯେତେ ଚେଷ୍ଟା କରୁଅଛି କୌଣସି ପ୍ରକାରେ ଚଞ୍ଚଳଚିତ୍ତକୁ ସ୍ଥିର କରି ପାରୁ ନାହିଁ । ଏହି ନିରନ୍ତର ଚିନ୍ତା ଦ୍ୱାରା ମୋହର ଏବେ ନିଦ୍ରା ହେଉ ନାହିଁ । ଏହିପରି ଦୁର୍ବିପାକରେ ପଡ଼ି ସେ ଅଳ୍ପକାଳପରେ କ୍ଷୟଶୀଳ ଜ୍ୱରରୋଗରେ ଆକ୍ରାନ୍ତ

ହେଲେ ଏବ ୧୬୪୨ ଖ୍ରୀଷ୍ଟାବ୍ଦରେ ୭୭ ବର୍ଷ ବୟସରେ ଇହଲୀଳା ସମ୍ବରଣ କରିଥିଲେ । ତାଙ୍କର ମୃତ ଦେହ ଫ୍ଲୋରେନ୍ସ ନଗରର ଦେବାଳୟରେ ସମାଧିସ୍ଥ ହୋଇଥିଲା ।

ଗାଲିଲିଓ ତାଙ୍କର ଜୀବନକାଳ ମଧ୍ୟରେ ନାନା ନିର୍ଯାତନ ସହି ଯେଉଁ-ସବୁ ତତ୍ତ୍ୱ ପ୍ରକାଶ କରି ଯାଇଅଛନ୍ତି ତାହା ଅଦ୍ୟାପି ଆଦରଣୀୟ ହୋଇ-ଅଛି । ଯେଉଁମାନେ ସମସ୍ତ ପ୍ରତିକୂଳତା ଓ ପ୍ରତିବନ୍ଧକକୁ ତୁଚ୍ଛଜ୍ଞାନ କରି ବଜ୍ର-ଦୃଢ଼ ହୃଦୟରେ ଆପଣାର ସାଧୁକାର୍ଯ୍ୟ ସାଧନ କରିଥାନ୍ତି ସେହିମାନେ ଧନ୍ୟ ।

---

## ପକ୍ଷୀ ।

ପ୍ରାୟ ସବୁପ୍ରକାର ପ୍ରାଣୀମଧ୍ୟରେ ପକ୍ଷୀଜାତୀୟ ପ୍ରାଣୀ ବଡ଼ ନିରୀହ ଏବ ଅନପକାରୀ । ସେମାନେ ମନୁଷ୍ୟର ଅପକାର ସାଧନ କରିବା ଦୂରେ ଥାଉ, ସୁମଧୁର କଣ୍ଠସ୍ୱରଦ୍ୱାରା ମନୁଷ୍ୟମନରେ ଆନନ୍ଦ ଉତ୍ପାଦନ କରନ୍ତି । ପକ୍ଷୀସୃଷ୍ଟି ହୋଇ ନ ଥିଲେ ପ୍ରକୃତି ଯେ କିପରି ନିର୍ଜୀବ ଏବ ନୀରସ ବୋଧ ହୁଅନ୍ତା ତାହା ସହଜରେ ଅନୁମାନ କରାଯାଇ ପାରେ । ପକ୍ଷୀମାନଙ୍କର ପକ୍ଷ ବା ପର ଅତି କୋମଳ ଏବ ମନୋହର ।

ନୀଡ଼ ନିର୍ମାଣରେ ପକ୍ଷୀମାନେ ଯେଉଁ ଅଦ୍ଭୁତ କୌଶଳ ପ୍ରଦର୍ଶନ କରନ୍ତି ତାହା ଦେଖିଲେ ବିସ୍ମିତ ହେବାକୁ ହୁଏ । ସେମାନଙ୍କର ଖାଦ୍ୟ ଜୀର୍ଣ୍ଣ କରିବାର ଶକ୍ତି ଅତି ବିଚିତ୍ର । କୌଣସି କୌଣସି ପକ୍ଷୀ ପଥର ଗୋଡ଼ି ପ୍ରଭୃତି ଗିଳିବାର ଦେଖାଯାଏ । ଏହି ଗୋଡ଼ି ସେମାନଙ୍କର ଖାଦ୍ୟ ନୁହେ ବା ସେମାନେ ଏହା ଜୀର୍ଣ୍ଣ କରନ୍ତି ନାହିଁ; ଏହା ସେମାନଙ୍କର ଖାଦ୍ୟ ପଦାର୍ଥର ଜୀର୍ଣ୍ଣପ୍ରକ୍ରିୟାରେ ସାହାଯ୍ୟ କରେ । ପକ୍ଷୀମାନଙ୍କର ସ୍ମରଣଶକ୍ତି ଅଛି । ପରିବ୍ରାଜକ ପକ୍ଷୀମାନେ ବର୍ଷକପରେ ପୁଣି ସେମାନଙ୍କର ବାସସ୍ଥାନକୁ ଫେରି ଆସନ୍ତି; ଏବ ଶୁକ, ସାରୀ ପ୍ରଭୃତି ଅନେକ ପକ୍ଷୀ ମନୁଷ୍ୟପ୍ରାୟ ଶ୍ଳୋକ କଣ୍ଠସ୍ଥ କରି ବୋଲନ୍ତି ।

ପକ୍ଷୀମାନଙ୍କର ଦନ୍ତ ନାହିଁ, କେବଳ ଥଣ୍ଟ ଅଛି । ସେମାନେ ସ୍ତନ୍ୟପାୟୀ

କୁହନ୍ତି ଏବଂ ପ୍ରତ୍ୟେକେ ଅଣ୍ଡା ଦିଅନ୍ତି । ଏହି ଅଣ୍ଡାରୁ ପକ୍ଷିଶାବକ ଜାତ ହୁଏ, ତେଣୁ ପକ୍ଷୀମାନଙ୍କୁ ଦ୍ୱିଜ କୁହାଯାଏ । ପକ୍ଷୀମାନଙ୍କର ଅସ୍ଥି ଶୂନ୍ୟଗର୍ଭ ।

ଭାରତରେ ଯେ କେତେ ବିଭିନ୍ନ ଜାତୀୟ ପକ୍ଷୀ ଅଛନ୍ତି ତାହା ନିର୍ଣ୍ଣୟ କରିବା ସହଜ ନୁହେ । ଅଜ ପର୍ଯ୍ୟନ୍ତ ପ୍ରାୟ ୧୬୦୦ ଜାତୀୟ ପକ୍ଷୀର ବିବରଣ ସଂଗୃହୀତ ହୋଇଅଛି ଏବଂ ସେଥିମଧ୍ୟରୁ ପ୍ରାୟ ସହସ୍ରଜାତୀୟ ପକ୍ଷୀ ପରିବ୍ରାଜକ ଶ୍ରେଣୀର ଅନ୍ତର୍ଭୁକ୍ତ, ଏହି ଶ୍ରେଣୀର ପକ୍ଷୀମାନେ ଋତୁଭେଦରେ ସ୍ଥାନଭ୍ରମଣ କରିଥାନ୍ତି । ଅମ୍ଭେମାନେ ଶୀତକାଳରେ ଯେଉଁ ଅସଂଖ୍ୟପ୍ରକାର ବତକ ବା ହଂସଶ୍ରେଣୀ ଦେଖୁଁ ସେମାନେ ଭାରତବର୍ଷର ପକ୍ଷୀ ନୁହନ୍ତି । ସେମାନେ ଉତ୍ତର-ବର୍ତ୍ତୀ ସାଇବେରିଆ, ତିବ୍ବତ ପ୍ରଭୃତି ଦେଶମାନଙ୍କରୁ ଆସିଥାନ୍ତି । ଶୀତକାଳ ଶେଷରେ ପୁଣି ସେମାନେ ସେହି ଦେଶମାନଙ୍କୁ ଚାଲିଯାନ୍ତି । ଶୀତାଗମନ ସମ-ୟରେ ନାନାଜାତିର ଏବଂ ନାନାବର୍ଣ୍ଣର ସାରସ ଏବଂ କଲହଂସ ଚିଲ୍କାହ୍ରଦର ଜଳରେ ସନ୍ତରଣ କରିବାର ଦେଖାଯାଏ । ସେମାନଙ୍କର ସଂଖ୍ୟା ଏତେ ଅଧିକ ଏବଂ ସେମାନେ ଏପରି ସାନ୍ଦ୍ରଭାବରେ ସନ୍ତରଣ କରୁଥାନ୍ତି ଯେ, ଦୂରରୁ ଦେଖିଲେ ଗୋଟିଏ ଭାସମାନ ପ୍ରାସାଦପୃଷ୍ଠ ପ୍ରାୟ ପ୍ରତୀୟମାନ ହୁଏ ।

ପକ୍ଷୀ ସ୍ଥଳଚର ଏବଂ ଜଳଚର ଏହି ଦୁଇ ପ୍ରଧାନ ଭାଗରେ ବିଭକ୍ତ । ଏତଦ୍‌ବ୍ୟତୀତ ଆକାର, ଚଞ୍ଚୁ, ପଦନଖ ଏବଂ ଖାଦ୍ୟଦ୍ରବ୍ୟର ବୈଷମ୍ୟ ଭେଦରେ ସେମାନଙ୍କୁ ନାନା ଶ୍ରେଣୀରେ ବିଭକ୍ତ କରାଯାଇଅଛି ।

ନିମ୍ନରେ ସାଧାରଣତଃ ଦୃଶ୍ୟମାନ କେତେଗୁଡ଼ିଏ ପକ୍ଷୀର ବିବରଣ ଦିଆଗଲା :—

୧—କାକ ଅନେକ ପ୍ରକାର ଅଛନ୍ତି । ସେମାନଙ୍କ ମଧ୍ୟରୁ ଡାମରାକୁଆ, କୁଜକୁଆ ଏହି ଦୁଇପ୍ରକାର ସାଧାରଣତଃ ଅମ୍ଭେମାନେ ଦେଖିବାକୁ ପାଉଁ । ଡାମରାକୁଆ ଅପେକ୍ଷାକୃତ ବଡ଼ । କାକମାନେ ଅମ୍ଭମାନଙ୍କର ନିତ୍ୟ ଯାଚକ ଏବଂ ଏମାନେ ଭାରତବର୍ଷର ପ୍ରାୟ ସମସ୍ତ ଅଂଶରେ ଦେଖାଯାନ୍ତି ।

ଡାମରାକୁଆ ଦେଖିବାକୁ ଗାଢ କୃଷ୍ଣବର୍ଣ୍ଣ ଏବଂ କୁଜକୁଆର ମସ୍ତକ ଏବଂ ଗ୍ରୀବାର ପର ଈଷତ୍ ଧୂମଳ ବର୍ଣ୍ଣ । ଡାମରାକୁଆମାନେ ବନରେ ଏବଂ କୁଜକୁଆମାନେ ଗ୍ରାମରେ ବାସ କରନ୍ତି । ସମୟ ୨ରେ ଡାମରାକୁଆମାନେ ମଧ୍ୟ ଗ୍ରାମ୍ୟ କୁଆମାନଙ୍କ ସଙ୍ଗେ ମେଞ୍ଚାଳୟ କୁଆସିଥାନ୍ତି । ରାତରେ ଅନେକଗୁଡ଼ିଏ କାକ ଗୋଟିଏ ବୃକ୍ଷରେ ରହନ୍ତି ଏବଂ ପ୍ରାତଃକାଳରେ ପୁଣି ସେମାନେ ନିଜ ୨ ଆହାର ଅନ୍ୱେଷଣରେ ଇତସ୍ତତଃ ଉଡ଼ଯାନ୍ତି ।



କାକ ।



କୋକିଳ ।

୨—କୋକିଳ ପ୍ରାୟ ଭାରତବର୍ଷର ସକଳ ସ୍ଥାନରେ ଦେଖାଯାନ୍ତି । କୋକିଳ ଦେଖିବାକୁ କାକପରି କୃଷ୍ଣବର୍ଣ୍ଣ; କିନ୍ତୁ ଅପେକ୍ଷାକୃତ କ୍ଷୁଦ୍ର ।

କୋକିଲର ସ୍ୱର ପରିଚିତ । ସବୁକାଳରେ ଏବଂ ସକଳ ଦେଶରେ କବିମାନେ କୋକିଳର ସ୍ୱର ପ୍ରଶଂସା କରିଅଛନ୍ତି । ବସନ୍ତଋତୁରେ କୋକିଳ ବେଶୀ ଦେଖାଯାନ୍ତି । ତେଣୁ କୋକିଳକୁ ବସନ୍ତଦୂତ ବୋଲାଯାଏ । ଏମାନେ କାକ-ପରି ଦଳବଦ୍ଧ ହୋଇ ବାସ ନ କରି ଦୁଇ ଦୁଇଟି ବାସ କରନ୍ତି ।

କୋକିଳମାନେ ଅନ୍ୟାନ୍ୟ ପକ୍ଷୀମାନଙ୍କପରି ବସା ନିର୍ମାଣ କରନ୍ତି ନାହିଁ । କାକନୀଡ଼ରେ ଏମାନେ ଡିମ୍ବ ଦିଅନ୍ତି । କାକ ଏହି ଡିମ୍ବକୁ ଆପଣା ଡିମ୍ବଜ୍ଞାନରେ ଉଷ୍ମ କରି ସେଥିରୁ ଶାବକ ଉତ୍ପାଦନ କରେ ଏବଂ ତାହାକୁ ମଧ୍ୟ ଚଢ଼ି ନ ପାରି ଆହାର ଦେଇ ବଞ୍ଚାଏ, ତେଣୁ କୋକିଳକୁ ପରଭୃତ କୁହାଯାଏ ।



ଶୁକପକ୍ଷୀ ।

୭—ଭାରତବର୍ଷରେ ଅନେକଜାତୀୟ ଶୁକପକ୍ଷୀ ଦେଖାଯାନ୍ତି । ସେମାନେ ଦେଖିବାକୁ ବଡ଼ ସୁନ୍ଦର । ଶୁକମାନଙ୍କ ମଧ୍ୟରୁ ଅଧିକାଂଶ ହରିଦ୍‌ବର୍ଣ୍ଣ । ଶୁକ୍ଳ ଶୁକପକ୍ଷୀ ମଧ୍ୟ ଦେଖାଯାନ୍ତି । ଅନେକ ଶୁକଙ୍କର ଗ୍ରୀବାଦେଶ ଲୋହିତ ବା ପୀତ ବର୍ଣ୍ଣ ।

ଶୁକପକ୍ଷୀର ଚଞ୍ଚୁ ଅନ୍ୟାନ୍ୟ ପକ୍ଷୀମାନଙ୍କ ଚଞ୍ଚୁଠାରୁ ଭିନ୍ନ । ଅନ୍ୟ ପକ୍ଷୀମାନଙ୍କ ଚଞ୍ଚୁର ନିମ୍ନଭାଗ ଚଳନଶୀଳ, କିନ୍ତୁ ଶୁକ ଚଞ୍ଚୁର ଉଭୟ ପାର୍ଶ୍ୱ ଚଳନ କରିପାରେ । ଶୁକର ଜିହ୍ୱା ଅନ୍ୟ ପକ୍ଷୀର ଜିହ୍ୱା ଅପେକ୍ଷା ଅଧିକ ସ୍ଥୂଳ । ତେଣୁ ବୋଧହୁଏ ଶୁକ ଏତେ ସ୍ପଷ୍ଟରୂପେ କଥା କହିପାରେ । ଅନ୍ୟ ପ୍ରାଣୀମାନଙ୍କ ଅପେକ୍ଷା ଶୁକ ବିଶେଷ ପରିମାଣରେ ଶବ୍ଦର ଅନୁକରଣ କରିପାରେ । ତେଣୁ ଅନେକ ସ୍ଥାନରେ ଲୋକେ ଶୁକକୁ ପିଞ୍ଜରାରେ ପୋଷି କଥା କହିବାକୁ ଶିକ୍ଷା ଦିଅନ୍ତି ।

୪—ମୟୂର ଗୋଟିଏ ଅତି ମନୋହର ପକ୍ଷୀ । ଏ ଦେଶରେ ଅନେକ-



ମୟୂର ।

ଜାତୀୟ ମୟୂର ଦୃଷ୍ଟ ହୁଅନ୍ତି । ମୟୂରର ପୁଚ୍ଛ ଏବଂ ତାହା ମସ୍ତକରେ ଗୋଟିଏ ଶିଖା ଅଛି । ସେହି ପୁଚ୍ଛର ଚନ୍ଦ୍ରିକାଗୁଡିକ ଦେଖିବାକୁ ଅତି ସୁନ୍ଦର । ଏହି

ପୁଚ୍ଛ ବିସ୍ତାର କରି ନୃତ୍ୟ କଲାବେଳେ ମୟୂର ଅତି ମନୋହର ଦେଖାଯାଏ । ଏହାର କଣ୍ଠଦେଶ ଗାଢ଼ ନୀଳବର୍ଣ୍ଣ । ମୟୂର ପରି ମୟୂରୀର ପୁଚ୍ଛ ଲମ୍ବା ଶିଖା ନ ଥାଏ । ମୟୂରମାନେ ସାଧାରଣତଃ ନିର୍ଝରଯୁକ୍ତ ଅରଣ୍ୟପ୍ରଦେଶରେ ଦେଖାଯାଆନ୍ତି । ଏମାନଙ୍କର ଶବ୍ଦ ଅନେକ ଦୂରରୁ ଶୁଣାଯାଏ । ଏମାନଙ୍କ ପୁଚ୍ଛରେ ପଙ୍ଖା ବିଞ୍ଚଣା ପ୍ରଭୃତି ପ୍ରସ୍ତୁତ ହୁଏ । ଅନେକ ବଡ଼ଲୋକ ନିଜ ନିଜ ବଗିଚାରେ ପୋଷା ମୟୂର ରଖିଥାନ୍ତି ।

୫ । ହଂସ ପ୍ରଧାନତଃ ଦୁଇ ପ୍ରକାର, ପାତିହଂସ ଓ ରାଜହଂସ । ରାଜହଂସ ପାତିହଂସ ଅପେକ୍ଷା ବୃହତ୍ତର । ହଂସମାନେ ସାଧାରଣତଃ ଜଳସନ୍ତରଣପଟୁ । ଏମାନଙ୍କ ପାଦର ଅଙ୍ଗୁଳିଗୁଡ଼ିକ ଯୋଡ଼ା ଏବଂ ଏପରିଭାବରେ ଗଠିତ ଯେ ସେମାନେ ସହଜରେ ଜଳରେ ସନ୍ତରଣ କରିପାରନ୍ତି ଏବଂ କାଦୁଅରେ ମଧ୍ୟ ଚାଲିପାରନ୍ତି । ହଂସ ଅନ୍ୟାନ୍ୟ ପକ୍ଷୀପରି ବଡ଼ ଲଘୁ ବା ହାଲୁକା, ତେଣୁ ସହଜରେ ଜଳଉପରେ ଭାସେ । ଅନ୍ୟାନ୍ୟ ସନ୍ତରଣଶୀଳ ପକ୍ଷୀମାନଙ୍କପରି ହଂସର ପର ବା ପକ୍ଷ ଚିକ୍କଣ ବା ତେଲିଆ, ତେଣୁ ଏମାନେ ଜଳରୁ ଉଠି ପକ୍ଷ ଝାଡ଼ିଦେଲେ ହଠାତ୍ ଜଳ ଖସିପଡ଼ିବାରୁ ତାହା ଶୀଘ୍ର ଶୁଷ୍କ ହୋଇଯାଏ; କିନ୍ତୁ ଅନ୍ୟାନ୍ୟ ପକ୍ଷୀ ଜଳରେ ପଡ଼ିଲେ ସେମାନଙ୍କର ପକ୍ଷରେ ଜଳ ଭେଦ ଯିବାରୁ ତାହା ସହଜରେ ଶୁଷ୍କ ହୁଏ ନାହିଁ । ହଂସର ଥଣ୍ଟ ମୋଟ ଏବଂ ଚେପ୍ଟା । ଏହି ଥଣ୍ଟମଧ୍ୟର ଚତୁର୍ଦ୍ଧାରରେ କ୍ଷୁଦ୍ର କୋମଳ ମାଂସପିଣ୍ଡମାନ ଶ୍ରେଣୀବଦ୍ଧ ହୋଇଅଛି । ପଙ୍କିଳ ଜଳ ମଧ୍ୟରେ ପୋକ ବା ଅନ୍ୟ କୌଣସି ଖାଦ୍ୟପଦାର୍ଥ ଦେଖିଲେ ହଂସ ଗୋଳିଆପାଣି ସହିତ ସେହି କୀଟକୁ ପାଟି ମଧ୍ୟକୁ ନିଏ । ଏବଂ ସେହି ମାଂସଗୁଟିକାବାଟେ ଜଳ ବାହାରକୁ ବାହାରକରିଦେଇ ପୋକଟି ଖାଏ ।

ରାଜହଂସ ଦେଖିବାକୁ ବଡ଼ ସୁନ୍ଦର । ଏମାନେ ସ୍ଥଳରେ ମଧ୍ୟ ବିଚରଣ କରନ୍ତି । ଅନେକେ ରାଜହଂସ ପୋଷିଥାନ୍ତି । ଏମାନଙ୍କର ପକ୍ଷରୁ ଅତି ସୁନ୍ଦର କଲମ ହୁଏ । ରାଜହଂସ ଉତ୍ତମରୂପେ ଉଡ଼ିପାରେ ନାହିଁ ।

## ଆଶ୍ରମେ ସନ୍ଧ୍ୟା ।



ଆଶ୍ରମେ ସନ୍ଧ୍ୟା ।

ପ୍ରଶାନ୍ତ ପାବନ ସଦା ଶାନ୍ତିପ୍ରସୂଣୀଳେ
ଅରଣ୍ୟ ଗରଭେ ଶୋଭେ ପ୍ରାଙ୍ଗଣ ନିର୍ମଳ ।

ଚଉପାଶେ ଫୁଲ-ଫଳେ ନତ ତରୁକୁଞ୍ଜ
ଠାବେ ଠାବେ ଶୋଭେ ଯେହ୍ନେ ନଭେ ତାରାପୁଞ୍ଜ ।

ଅଦୂରେ ପଡ଼ନ୍ତ ଝର କଳକଳ ସ୍ୱରେ
ଶୈଳପ୍ରସ୍ରବଣୁ ପୟଃ ଆଶ୍ରମ ଚତ୍ୱରେ ।

ଦଳେ ଦଳେ ପକ୍ଷୀ ପିଇ ସୁଧାସ୍ୱାଦୁ ପୟ
ଆଶ୍ରମପାଦପେ ଚଳଲେ ଅଭୟ ଆଶ୍ରୟ ।

ମଧ୍ୟେ ଗୁରୁପର୍ଣ୍ଣଶାଳା ସହକାର ତଳେ
ଅଗ୍ରେ ମନୋହର ବେଦୀ ଆଶ୍ରମ ଉଜଳେ ।

ହରଣ ହରଣୀ ଯେନ ସ୍ବ-ଶାବକ ଦଳେ
ସର୍ବମନେ ବିଶ୍ରାମିଲେ ସେହି ବେଦୀ ତଳେ ।

ବାମେ କମଣ୍ଡଳୁ, ଦକ୍ଷେ କୁଶ ସମିଧାଦି,
ସମ୍ମୁଖରେ ଅଗ୍ନିକୁଣ୍ଡ; ବସି ବ୍ରହ୍ମବାଦୀ

ମେଧ୍ୟ କୃଷ୍ଣ ଜିନପରେ ସିଦ୍ଧ ମୁଦ୍ରାସନେ
ସନ୍ଧ୍ୟା ଉପାସନେ ରତ ହେଲେ ପୂତମନେ ।

ନବଦ୍ୱାରୁ ବାହ୍ୟ ରୋଧି ଏବେ ଧ୍ୟାନମଗ୍ନ
ଆତ୍ମା ପରମାତ୍ମପଦେ କରନ୍ତନ୍ତି ଲଗ୍ନ ।

ଧୀରେ ଧୀରେ ଘୋଟିଆସେ ଘନ ଅନ୍ଧକାର
ଧ୍ୟାନେ ଦେଖୁଛନ୍ତି ଋଷି ଜ୍ୟୋତିର ସଂସାର ।

---

## ରମେଶଚନ୍ଦ୍ର ଦତ୍ତ ।

ରମେଶଚନ୍ଦ୍ର ଖ୍ରୀଷ୍ଟୀୟ ୧୮୪୮ ଅବ୍ଦରେ କଲିକତା ନଗରୀରେ ଏକ ବିଖ୍ୟାତ ଦତ୍ତବଂଶରେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କ ପିତା ଈଶାନଚନ୍ଦ୍ର ଦତ୍ତ ବଙ୍ଗୀୟ ପ୍ରଥମ ଡେପୋଟୀକଲେକ୍ଟରମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ । ତାହାଙ୍କର ପିତୃବ୍ୟ ରସମୟ ଦତ୍ତ ସଂସ୍କୃତ କଲେଜର ପ୍ରଧାନ ଅଧ୍ୟାପକ (ପ୍ରିନ୍ସିପାଲ) ଥିଲେ । ତାହାଙ୍କ ପୂର୍ବରୁ ଅନ୍ୟ କୌଣସି ଭାରତବାସୀ ଶିକ୍ଷାବିଭାଗରେ ଏପରି ଉଚ୍ଚପଦ ଅଧିକାର କରି ନ ଥିଲେ । ସୁକବି ଏବଂ ସୁଲେଖିକା ତରୁ ଦତ୍ତ ମଧ୍ୟ ଏହି ପ୍ରସିଦ୍ଧ ବଂଶରେ ଜନ୍ମଗ୍ରହଣପୂର୍ବକ ସ୍ୱଦେଶରେ ଏବଂ ବିଦେଶରେ ସମ୍ମାନ ପ୍ରାପ୍ତ ହୋଇ ସ୍ୱକୀୟ ନାରୀକୁଳକୁ ଗୌରବାନ୍ୱିତ କରିଅଛନ୍ତି ।

ରମେଶଙ୍କର ଅତି ତରୁଣ ବୟସରେ ତାହାଙ୍କର ପିତାମାତା ଉଭୟେ ମାନବଲୀଳା ସମ୍ବରଣ କରିବାରୁ ତାହାଙ୍କର ପିତୃବ୍ୟ ଶଶିଚନ୍ଦ୍ରଦତ୍ତ ରମେଶଚନ୍ଦ୍ର ଏବଂ ତଦୀୟ ଭ୍ରାତା ଭଗିନୀମାନଙ୍କ ଲାଳନପାଳନ ଓ ଶିକ୍ଷାର ଭାର ଗ୍ରହଣ

କରୁଥିଲେ । ସେ ରମେଶଙ୍କୁ ପ୍ରଥମେ କଲିକତାର ପ୍ରସିଦ୍ଧ ହେୟାରସ୍କୁଲ ଏବଂ ତତ୍ପରେ ପ୍ରେସିଡେନ୍ସି କଲେଜକୁ ଅଧ୍ୟୟନାର୍ଥେ ପ୍ରେରଣ କରିଥିଲେ । ଅଧ୍ୟୟନ କାଳରେ ରମେଶଙ୍କର ମନ ଇଂରାଜୀ ଏବଂ ସଂସ୍କୃତ ସାହିତ୍ୟ ପ୍ରତି ବିଶେଷଭାବରେ ଆକୃଷ୍ଟ ହୋଇଥିଲା ।



ରମେଶଚନ୍ଦ୍ର ଦତ୍ତ ।

କଲେଜର ଅଧ୍ୟାୟୀ ଥିବା ସମୟରେ ବାଗ୍ମୀ ସୁରେନ୍ଦ୍ରନାଥ ବନ୍ଦ୍ୟୋପାଧ୍ୟାୟ ଏବଂ ବିହାରୀଲାଲ ଗୁପ୍ତ ତାହାଙ୍କର ପରମ ବନ୍ଧୁ ଥିଲେ । ଇଂଲଣ୍ଡକୁ ଯାଇ କଭଣ୍ଟେଡ୍ ସିଭିଲ ସର୍ଭିସ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପାଇଁ ତନ

ବନ୍ଧୁଙ୍କର ଏକାନ୍ତ ଇଚ୍ଛା ଥିଲା । ସୁରେନ୍ଦ୍ରନାଥଙ୍କ ପିତା ତାହାଙ୍କୁ ବିଲାତ ଯିବାକୁ ଅନୁମତି ଦେଇଥିଲେ ; କିନ୍ତୁ ରମେଶ ଏବଂ ବିହାରିଲାଲଙ୍କର ଆତ୍ମୀୟମାନେ ସେ ବିଷୟରେ ବିଷମ ଆପତ୍ତି ଉତ୍ଥାପନ କଲେ । ତେଣୁ ସେ ଦୁହେଁ ଅନ୍ଧକାରମୟ ରାତ୍ରରେ ଗୃହରୁ ପଳାୟନ କରି ବାଷ୍ପୀୟ ପୋତରେ ସୁରେନ୍ଦ୍ରଙ୍କ ସହ ମିଳିତ ହେଲେ । ସେ ସମୟରେ ଜାତି ବା ହିନ୍ଦୁତ୍ୱ ନଷ୍ଟ ହେବା ଭୟରେ ପ୍ରାୟ କୌଣସି ବଙ୍ଗବାସୀ ବିଲାତଯାତ୍ରା କରୁ ନ ଥିଲେ । କିନ୍ତୁ ଉଚ୍ଚାଭିଳାଷୀ ଏହି ତିନିଜଣ ଯୁବକ ସେ କୁସଂସ୍କାରପ୍ରତି ଭ୍ରୂକ୍ଷେପ ନ କରି ସାହସସହକାରେ ଯେଉଁ କାର୍ଯ୍ୟ କରିଥିଲେ ତାହା ସର୍ବଥା ପ୍ରଶଂସନୀୟ ।

ରମେଶ ୧୮୬୮ ଖ୍ରୀଷ୍ଟାବ୍ଦରେ ବିଂଶତି ବର୍ଷ ବୟଃକ୍ରମକାଳରେ ଭାରତ ପରିତ୍ୟାଗ କରି ବନ୍ଧୁଦ୍ୱୟଙ୍କ ସହିତ ବିଲାତ ଯାତ୍ରା କଲେ । ସେଠାରେ ସେମାନେ ବର୍ଷେକାଳ ସାଧାରଣଶିକ୍ଷା ପ୍ରାପ୍ତ ହେଲା ଉତ୍ତାରେ ଭାରତୀୟ ସିଭିଲ-ସର୍ଭିସ ପରୀକ୍ଷା ନିମନ୍ତେ ପ୍ରସ୍ତୁତ ହୋଇ ତିନିହେଁ ଉକ୍ତ ପରୀକ୍ଷାରେ ଉତ୍ତୀର୍ଣ୍ଣତା ଲାଭ କରିଥିଲେ । ଉକ୍ତ ବର୍ଷରେ ତିନିଶତ ପରୀକ୍ଷାର୍ଥୀଙ୍କ ମଧ୍ୟରୁ ରମେଶ ତୃତୀୟ ସ୍ଥାନ ଅଧିକାର କରିଥିଲେ ଏବଂ ଇଂରେଜୀ ଭାଷାରେ ଦ୍ୱିତୀୟ ଓ ସଂସ୍କୃତ ସାହିତ୍ୟରେ ପ୍ରଥମ ହୋଇଥିଲେ ।

ବିଲାତରେ ଏହି ତିନି ଯୁବକଙ୍କର ଅନେକଗୁଡ଼ିଏ ଉଚ୍ଚପଦସ୍ଥ ବନ୍ଧୁ ଥିଲେ । ଇଂଲଣ୍ଡର ପ୍ରଧାନ ପ୍ରଧାନ ରାଜନୀତିଜ୍ଞମାନେ ଆନନ୍ଦସହକାରେ ଏମାନଙ୍କ ସଙ୍ଗେ ମିଷ୍ଟାଳାପ କରୁଥିଲେ ଏବଂ ଏମାନଙ୍କୁ ଅନେକ ପ୍ରକାର ସାହାଯ୍ୟ ଓ ଉତ୍ସାହ ପ୍ରଦାନ କରୁଥିଲେ । ସେମାନଙ୍କର ଇଂଲଣ୍ଡୀୟ ବନ୍ଧୁମାନଙ୍କ ମଧ୍ୟରେ ପ୍ରଧାନ ମନ୍ତ୍ରୀ ଶ୍ରୀଯୁକ୍ତ ଗ୍ଲାଡ଼ଷ୍ଟୋନ୍ ଜଣେ ଥିଲେ । ସିଭିଲ୍‌ସର୍ଭିସ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ ସେମାନେ ସମଗ୍ର ଇଂଲଣ୍ଡ ପରିଭ୍ରମଣ କରିଥିଲେ ଏବଂ ତତ୍ପରେ ଫ୍ରାନ୍ସ, ଜର୍ମାନୀ ଏବଂ ୟୁରୋପର ଅନ୍ୟାନ୍ୟ ଦେଶମାନଙ୍କରେ ଭ୍ରମଣ କରି ସ୍ୱଦେଶକୁ ପ୍ରତ୍ୟାଗତ ହୋଇଥିଲେ ।

ଭାରତକୁ ପ୍ରତ୍ୟାଗମନ କରି ସେ ତିନିହେଁ ସ୍ୱଗୁଣରେ ବେଶ-ବିଖ୍ୟାତ

ହୋଇଅଛନ୍ତି । ଗୁପ୍ତ ହାଇକୋର୍ଟର ଜଣେ ବିଚାରପତି ହୋଇଥିଲେ ; ଏବଂ ବନ୍ଦୋପାଧ୍ୟାୟ ରିପନ କଲେଜର ସ୍ଥାପୟିତା ଓ ଗୋଟିଏ ବିଖ୍ୟାତ ଇଂରାଜୀ-ପତ୍ରିକା ଓ ବଙ୍ଗଭାଷାପତ୍ରିକାର ସମ୍ପାଦକ । ରମେଶ ପ୍ରଥମେ ସହକାରୀ କଲେକ୍ଟର ଏବଂ ତତ୍ପରେ କଲେକ୍ଟର କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ । ତାହାଙ୍କ ପୂର୍ବରୁ ଅନ୍ୟ କୌଣସି ଭାରତବାସୀ କଲେକ୍ଟର ପଦରେ ନିଯୁକ୍ତ ହୋଇ କୌଣସି ଜିଲ୍ଲାର ଶାସନଭାର ପ୍ରାପ୍ତ ହୋଇ ନ ଥିଲେ । ସେ ବରିଶାଲ, ମୟମନସିଂହ ଏବଂ ବର୍ଦ୍ଧମାନ ଜିଲ୍ଲାମାନଙ୍କର କଲେକ୍ଟର କାର୍ଯ୍ୟ ସୁଚାରୁରୂପେ ପରିଚାଳନ କରିଥିଲେ ଏବଂ ତତ୍ପରେ ବର୍ଦ୍ଧମାନ ଏବଂ ପରିଶେଷରେ ଓଡ଼ିଶାର କମିଶନର ପଦରେ ନିଯୁକ୍ତ ହୋଇଥିଲେ । ତାହାଙ୍କ ପୂର୍ବରେ ଅବା ପରେ ଅତି ଅଳ୍ପ ଭାରତବାସୀ ଶାସନବିଭାଗରେ ଏପରି ଉଚ୍ଚପଦ ଅଧିକାର କରିଅଛନ୍ତି । ତାହାଙ୍କ କାର୍ଯ୍ୟରେ ସନ୍ତୁଷ୍ଟ ହୋଇ ଭାରତ-ଗବର୍ଣ୍ଣମେଣ୍ଟ ତାଙ୍କୁ ସି: ଆଇ: ଇ: ଉଚ୍ଚ ଉପାଧି ପ୍ରଦାନ ଦ୍ୱାରା ସମ୍ମାନିତ କରିଥିଲେ ।

କମିଶନର ପଦରେ ଗୁରିବର୍ଷମାତ୍ର କାର୍ଯ୍ୟ କରି ୧୮୯୭ ଖ୍ରୀଷ୍ଟାବ୍ଦରେ ରମେଶଚନ୍ଦ୍ର ଶାସନବିଭାଗର କାର୍ଯ୍ୟ ପରିତ୍ୟାଗପୂର୍ବକ ଜୀବନର ଅବଶିଷ୍ଟ ସମୟ ସାହିତ୍ୟର ଆଲୋଚନାରେ ଅତିବାହିତ କରିବାର ମନସ୍ଥ କଲେ । ସେ ପ୍ରଥମେ ଇଂରାଜୀ ଏବଂ ବଙ୍ଗଭାଷାରେ କେତେଖଣ୍ଡ ଉପନ୍ୟାସଗ୍ରନ୍ଥ ରଚନା କରି-ଥିଲେ ଏବଂ ପରେ ଲଣ୍ଡନସ୍ଥ ବିଶ୍ୱବିଦ୍ୟାଳୟରେ ଭାରତୀୟଇତିହାସର ଅଧ୍ୟାପକ ପଦରେ ନିଯୁକ୍ତ ହୋଇ ସେଠାରେ ଭାରତର ଇତିହାସ ପ୍ରଣୟନ କରିଥିଲେ ଏବଂ ଇଂରାଜୀଭାଷାରେ ବେଦର କିୟଦଂଶର ଅନୁବାଦ ଏବଂ ରାମାୟଣ ଓ ମହାଭାରତର ପଦ୍ୟାନୁବାଦ କରିଥିଲେ ।

୧୯୦୪ ଖ୍ରୀଷ୍ଟାବ୍ଦରେ ରମେଶଚନ୍ଦ୍ର ଭାରତକୁ ପ୍ରତ୍ୟାଗମନ କରି ବରୋଦା ରାଜ୍ୟର ରାଜସ୍ୱସଚିବରୂପରେ ନିଯୁକ୍ତ ହୋଇଥିଲେ । ସେ ଏହି କାର୍ଯ୍ୟରେ ତିନିବର୍ଷ ରହି ଉକ୍ତ ସମୟମଧ୍ୟରେ ବରୋଦାର ଅଶେଷ ଉପକାର ସାଧନ କରିଥିଲେ । ତାଙ୍କ ପୂର୍ବରୁ ଅନେକ ପ୍ରକାର ଅଯଥା କର ପ୍ରଜାମାନଙ୍କ ଉପରେ ଧାର୍ଯ୍ୟ ହୋଇଥିଲା । କିନ୍ତୁ ରମେଶଚନ୍ଦ୍ର ଉକ୍ତ କରସବୁ ଉଠାଇ ଦେଇଥିଲେ ।

ବାଣିଜ୍ୟ-ପଦାର୍ଥମାନଙ୍କ ଉପରୁ ଶୁଳ୍କ ଉଠାଇଦେବାରୁ ବାଣିଜ୍ୟର ଅଶେଷ ଉନ୍ନତି ସାଧିତ ହୋଇଥିଲା । ସେ ବରୋଦାରାଜ୍ୟ ମଧ୍ୟରେ ଅନେକ ବିଦ୍ୟାଳୟ ସ୍ଥାପନ କରି ବାଧ୍ୟତାମୂଳକ ଶିକ୍ଷା ପ୍ରଚାର କରିଥିଲେ । ବିଦ୍ୟାଳୟର ଛାତ୍ରମାନଙ୍କୁ ବେତନ ଦେବାକୁ ପଡୁ ନ ଥିଲା ।

ସେହି ସମୟରେ ଭାରତର ଶାସନପ୍ରଣାଳୀ କିପରି ପରିଚାଳିତ ହେଉଅଛି ତାହା ଅନୁସନ୍ଧାନ କରିବା ନିମନ୍ତେ ବିଲାତରେ ପାର୍ଲିଅମେଣ୍ଟ ମହାସଭା ଗୋଟିଏ ରାଜକୀୟ କମିଶନ ବା ସମିତି ବସାଇଲେ । ରମେଶଚନ୍ଦ୍ର ବରୋଦାରୁ ଦୀର୍ଘ ଅବକାଶ ଗ୍ରହଣକରି ଉକ୍ତ ସମିତିର ସଦସ୍ୟପଦରେ ନିଯୁକ୍ତ ହେଲେ । ସମିତିର କାର୍ଯ୍ୟ ଶେଷ ହେବା ପରେ ସେ ଦେୱାନ ପଦରେ ନିଯୁକ୍ତ ହୋଇ ପୁନର୍ବାର ବରୋଦାକୁ ପ୍ରତ୍ୟାବର୍ତ୍ତନ କଲେ ଏବଂ ସେହି ସ୍ଥାନରେ ୧୯୦୯ ସାଲରେ ୬୧ ବର୍ଷ ବୟଃକ୍ରମକାଳରେ ଇହଲୀଳା ସମ୍ବରଣ କଲେ ।

ରମେଶଚନ୍ଦ୍ର ବିଦ୍ୱାନ୍, ସତ୍ୟନିଷ୍ଠ, ଦୃଢ଼ପ୍ରତିଜ୍ଞ ଓ ଅଧ୍ୟବସାୟୀ ପୁରୁଷ ଥିଲେ, ଏବଂ ଯେତେବେଳେ ଯେଉଁ କାର୍ଯ୍ୟର ଭାର ଗ୍ରହଣ କରୁଥିଲେ ତାହା ପ୍ରଗାଢ଼ ଯତ୍ନସହକାରେ ସାଧନ କରୁଥିଲେ । ତାଙ୍କର ସ୍ମୃତି ସଂରକ୍ଷଣାର୍ଥ 'ରମେଶ ଭବନ' ସଂସ୍ଥାପନର ଉଦ୍ଯୋଗ ବର୍ତ୍ତମାନ ବଙ୍ଗଦେଶରେ ହେଉଅଛି ।

---

## ନଅଙ୍କ-ଦୁର୍ଭିକ୍ଷ ।

୧୮୬୪ ଖ୍ରୀଷ୍ଟାବ୍ଦରେ ଘୋର ଅନାବୃଷ୍ଟି ଓ ବାତାବର୍ତ୍ତ ଯୋଗେ ଓଡ଼ିଶାରେ ଶସ୍ୟହାନି ହୋଇଥିଲା । ତେଣୁ ତହିଁର ବର୍ଷରେ ଶସ୍ୟ ଏ ଦେଶରେ ମହାର୍ଘ ହେବାରୁ କ୍ରମେ ଦୁର୍ଭିକ୍ଷର ଅଙ୍କୁର ଯୋଡ଼ିପଡ଼ିଲା ଏବଂ ସ୍ଥାନେ ସ୍ଥାନେ ତାହା ଭୀଷଣ ହୋଇଉଠି ୧୮୬୬ ଅବ୍ଦରେ ସମସ୍ତ ଉତ୍କଳଖଣ୍ଡରେ କରାଳ ମୂର୍ତ୍ତି

ଧାରଣ କଲା । ଏହା ପୁରୀର ରାଜା ଦିବ୍ୟସିଂହ ଦେବଙ୍କ ନଅ ଅଙ୍କ ବା ରାଜତ୍ୱର ନବମବର୍ଷରେ ପଡ଼ିଥିବାରୁ ଦୁର୍ଭିକ୍ଷର ନାମ ନଅଙ୍କଦୁର୍ଭିକ୍ଷ ହୋଇଅଛି । ଏହି ମହାଦୁର୍ଭିକ୍ଷ ସଙ୍ଗେ ନଅଅଙ୍କ ନାମର ଏପରି ସଂଯୋଗ ହୋଇଅଛି ଯେ ବର୍ତ୍ତମାନ ଓଡ଼ିଆଭାଷାରେ ନଅଙ୍କ କହିଲେ ଦୁର୍ଭିକ୍ଷ ବୁଝାଯାଏ ଏବଂ ନଅଙ୍କିଆର ଅର୍ଥ ଦୁର୍ଭିକ୍ଷପୀଡ଼ିତ ଲୋକ । ଏହି ନଅଙ୍କ କଥା ମନେ ପଡ଼ିଲେ ଅଦ୍ୟାପି ଲୋକଙ୍କର ହୃତ୍କମ୍ପ ଜାତ ହେଉଅଛି । ଅନୁଭବୀମାନଙ୍କ ହୃଦୟରେ ଅଦ୍ୟାପି ସେ ଦାରୁଣ ଚିତ୍ର ଜାଗରୂକ ରହିଅଛି । ସଂକ୍ଷେପରେ ଏଥିର ବିବରଣ ନିମ୍ନରେ ବର୍ଣ୍ଣିତ କରାଯାଉଅଛି ।

ସର୍ବପ୍ରଥମେ ଓଡ଼ିଶାର ଦକ୍ଷିଣାଞ୍ଚଳରୁ ଏହି ଦୁର୍ଭିକ୍ଷର ଉପକ୍ରମ ହୋଇଥିଲା ଏବଂ ପୁରୀଜିଲ୍ଲାରେ ଏହା ସର୍ବାପେକ୍ଷା ଭୀଷଣ ହୋଇପଡ଼ିଥିଲା । କ୍ରମେ ଧାନ ଚାଉଳ ମହାର୍ଘ ହୋଇଆସିବାରୁ ଦରିଦ୍ର ସମାଜରେ ଦୁଇବେଳ ଆହାର ଦୁର୍ଲଭ ହୋଇଗଲା । ଟଙ୍କାରେ ଚାଉଳ ପ୍ରାୟ ୪୦।୫୦ ସେରରୁ କ୍ରମେ ଖସିଆସି ଯେତେବେଳେ ପ୍ରାୟ ପଞ୍ଚସେରରେ ରହିଥିଲା, ସେତେବେଳେ ତାହା ସାଧାରଣଙ୍କ ପକ୍ଷେ ଏକାନ୍ତ ଦୁର୍ଲଭ ହୋଇପଡ଼ିଥିଲା । ଚାଉଳ ନ ମିଳିବାରୁ ଲୋକେ ମାଣ୍ଡିଆ, ମୁଗ, କୋଳଥ ପ୍ରଭୃତି ସିଝି କରି କିଛିକାଳ ଉଦରଜ୍ୱାଳା ନିବାରଣ କରିନେଲେ । ପଛକୁ ସେସବୁ ମଧ୍ୟ ଦୁର୍ଲଭ ହୋଇପଡ଼ିଲା । ଏଣେ ଅର୍ଥ ଅଭାବରେ ଲୋକେ ଆପଣାର ବସ୍ତ୍ର, ଅଳଙ୍କାର, ବାସନ, ପୋଥି ପେଡ଼ିଆଦି ଯାବତୀୟ ଗୃହୋପକରଣ ଏବଂ ଗୃହପାଳିତ ପଶୁମାନ ବିକ୍ରୟ କରିବାକୁ ଲାଗିଲେ ; ଶେଷରେ ଉଦରଜ୍ୱାଳାରେ ପୂର୍ବପୁରୁଷାର୍ଜିତ ଭୂସମ୍ପତ୍ତି ମଧ୍ୟ ଅଳ୍ପମୂଲ୍ୟରେ ଦେଇ ଖାଦ୍ୟଦ୍ରବ୍ୟ ଗ୍ରହଣ କଲେ । ଯେଉଁମାନେ ପୂର୍ବରୁ ସାବଧାନ ହୋଇ ଧାନ୍ୟ ସଂଗ୍ରହ କରି ରଖିଥିଲେ ସେହିମାନେ ତାହା ବିନିମୟରେ ବହୁ ଧନ, ଗୋଧନ ଏବଂ ଭୂଇଁବାଡ଼ୀ ଲାଭ କରିଥିଲେ । ବହୁଘରର ଧନ ସେହିମାନଙ୍କ ଗୃହରେ ପୁଞ୍ଜୀଭୂତ ହେବାକୁ ଲାଗିଲା । ଫଳତଃ ଭୂମିକମ୍ପଯୋଗେ ଭୂପୃଷ୍ଠର ଉତ୍ଥାନପତନ ହେଲାପ୍ରାୟ ଏହି ଦୁର୍ଭିକ୍ଷଯୋଗେ ଅନେକଙ୍କର ଉତ୍ଥାନପତନ ହୋଇଗଲା । ଯେ ଧାନ୍ୟପତି ସେ ଯେପରି ଧନଶାଳୀ ହେଲେ, ସେହିପରି କେତେ ଧନବାନ୍

ମଧ୍ୟ ତଦଭାବରେ ଦୀନହୀନ ହୋଇପଡ଼ିଲେ । ପରିଶେଷରେ ଏପରି ହେଲା ଯେ, ଲୋକେ ସାମାନ୍ୟ ମୁଠାଏ ଧାନଚାଉଳ ପାଇଁ ବହୁମୂଲ୍ୟ ଦ୍ରବ୍ୟସମ୍ପଦ ସାରା ସୁଦ୍ଧା ହତାଶ ହୋଇ ଫେରି ଆସୁଥିଲେ । ଚାଉଳ କଥା ଦୂରକୁ ଥାଉ, ଗୁଣ୍ଡ କୁଣ୍ଡା ପାଇଁ ମଧ୍ୟ ଲୋକେ ଯାଚକ ହୋଇ ଧନୀଦ୍ୱାରରେ ରୁଣ୍ଡ ହେଉଥିଲେ । ପେଜ-ତୋରାଣି ଗୋରୁଙ୍କୁ ମିଳିବା ତେଣିକି ଥାଉ, ମନୁଷ୍ୟଙ୍କ ପକ୍ଷରେ ଦୁର୍ଲ୍ଲଭଦ୍ରବ୍ୟ ହୋଇଗଲା । ଅନେକେ ଉଦରଜ୍ୱାଳାରେ ଗୋରୁ ମୁହଁରୁ ତାହା ଛଡ଼ାଇ ନେବାକୁ ଛାଡ଼ୁ ନ ଥିଲେ । ଅନ୍ନ ସାଧାରଣ ଲୋକଙ୍କ ପକ୍ଷରେ ସେତେବେଳେ ସ୍ୱର୍ଗର ଅମୃତପ୍ରାପ୍ତି ଏକାନ୍ତ ଦୁର୍ଲ୍ଲଭ ଏବଂ ସ୍ୱପ୍ନର ବିଷୟ ହୋଇଥିଲା । ତାହା-ଲାଗି ଲୋକେ ଜାତିଧର୍ମ ତେଜି ସମାଜବନ୍ଧନ ନ ମାନି ଯତ୍ରତତ୍ର ଅନ୍ନ ଭୋଜନ କରିବାକୁ ଲାଗିଲେ । ଅନ୍ନପ୍ରଲୋଭନରେ ମଧ୍ୟ ଏହି ସମୟରେ ଅନେକେ ବିଧର୍ମୀ ହୋଇପଡ଼ିଲେ । ତଥାପି ଜଠରାନଳର ଶାନ୍ତି ହୋଇପାରିଲା ନାହିଁ । ଦୀର୍ଘ ଅନଶନରେ କ୍ରମେ ଜଣ ଜଣ ହୋଇ ଅକାଳମୃତ୍ୟୁଗ୍ରାସରେ ପଡ଼ିବାକୁ ଲାଗିଲେ । ଖାଦ୍ୟ ଅଭାବରେ ଲୋକେ ଘରଦ୍ୱାର ଛାଡ଼ି ନାନାସ୍ଥାନରେ ବୁଲି ଅନେକ ଅପଥ୍ୟ, ଅଭକ୍ଷ୍ୟ ଦ୍ରବ୍ୟ ଉଦରସାତ୍ କରିବାକୁ ଲାଗିଲେ । କଥକନ୍ଦା, କଇଁନାଡ଼, କଇଁମୁଣ୍ଡା ଓ ନାନା ବନ୍ୟ ଶାକମୂଳସବୁ ମାନବର ଗର୍ଭସାତ୍ ହେଲା । ଦୀର୍ଘକାଳ ଅନାବୃଷ୍ଟି ଯୋଗୁଁ ଧରାପୃଷ୍ଠ ଶୁଷ୍କ ମରୁସ୍ଥଳପ୍ରାୟ ନିତାନ୍ତ ନିର୍ଜଳ ଓ ନୀରସ ହୋଇଥିଲା । ଯେଉଁଠାରେ ଟିକିଏ ରସର ଲକ୍ଷଣ ଦେଖୁଥିଲେ ସେଠାରେ ଦଳେ ଦଳେ ଲୋକ ରୁଣ୍ଡ ହେଉଥିଲେ । ସେହି ଅସ୍ଥିକଙ୍କାଳମୟ, ବିଶୀର୍ଣ୍ଣ-କାୟ, ରୁକ୍ଷକେଶ, କୁରୂପ ଲୋକମାନଙ୍କୁ ଯେଉଁମାନେ ସ୍ୱଚକ୍ଷୁରେ ଦେଖିଅଛନ୍ତି ସେମାନେ ଅଦ୍ୟାପି ସେ କଥା ମନେ ପଡ଼ିଲେ ଅଶ୍ରୁବିସର୍ଜ୍ଜନ ନ କରି ରହିପାରନ୍ତି ନାହିଁ । ଅନଶନ ସଙ୍ଗେ ସଙ୍ଗେ ଦୁର୍ଭିକ୍ଷସହଚର ଶୋଥ, ଶ୍ଳୀପଦ, କାମଳ, ଅତିସାର, ବିସୂଚି ଆଦି କେତେ ରୋଗ ଆସି ଶତଶତ ଲୋକ ଯୁଗପତ୍ ସଂହାର କରିବାକୁ ଲାଗିଲା । କେତେକ ଲୋକ ମଧ୍ୟ ଦୀର୍ଘକାଳପରେ ଦିନେ ଥରେମାତ୍ର ଭୋଜନ ପାଇ ଶାନ୍ତିରେ ମହାନିଦ୍ରା ଭଜିଲେ । ଭୋଜନଲାଗି ମାରାମାରିରେ ପଡ଼ି ମଧ୍ୟ ଅନେକେ ଇହଲୀଳା ସାଙ୍ଗ କରିଥିଲେ । ପ୍ରତି ଜନାକୀର୍ଣ୍ଣ ବସତିରେ

ଶତଶତ ଶବପାତରେ ମହାଶ୍ମଶାନର ବିଭୀଷିକାମୟ ବିକଟ ଦୃଶ୍ୟ ଲୋକବାସ ଜନ୍ମାଇଲା । ଅର୍ଦ୍ଧମୃତ ବା ମୁମୂର୍ଷୁ ଆତ୍ମୀୟଜନ ସମକ୍ଷରେ ଶ୍ୱାନଶୃଗାଳ ଆସି ଧରି ମୃତଦେହ ଓଟାରିନେବାକୁ ଲାଗିଲେ । ଉଦରଜ୍ୱାଳାରେ ସେତେବେଳେ ଅନେକେ ସ୍ନେହ, ଭକ୍ତି ଓ ବାତ୍ସଲ୍ୟ ଏକାବେଳକେ ବିସ୍ମୃତ ହୋଇଯାଇଥିଲେ । କେତେ ଲୋକ ନିର୍ମମଭାବରେ ଶିଶୁ ପୁତ୍ରକନ୍ୟାଙ୍କୁ ଛାଡ଼ିଦେଇ ଆପଣା ପ୍ରାଣ ନେଇ ଦୂରଦେଶକୁ ପଳାଇ ଯାଇଥିଲେ । ଯେଉଁମାନେ କିଞ୍ଚିତ୍ ଖାଦ୍ୟସଞ୍ଚୟ ଯୋଗୁଁ ଦମ୍ଭ ଧରି ପୈତୃକସ୍ଥାନରେ ପଡ଼ିରହିଲେ ସେମାନେ ବାହାରେ ସର୍ବଦା ବହୁ-ଯାଚକଙ୍କ କାତରଡାକରେ ସ୍ୱଚ୍ଛନ୍ଦରେ ଦିଓଟି ଖାଇ ନ ପାରି ଅଧିକ କଷ୍ଟରେ ଦିନଯାପନ କରୁଥିଲେ । ଆହାର ଅଭାବରେ ଲୋକଙ୍କର ଯେତେ ଯେତେ ଅବସ୍ଥାବିପର୍ଯ୍ୟୟ ହୋଇଥିଲା ସେସବୁ ସମ୍ପୂର୍ଣ୍ଣରୂପେ ବର୍ଣ୍ଣନା କରିହେବ ନାହିଁ । ତାହାର ସବିସ୍ତାର ବର୍ଣ୍ଣନା ମଧ୍ୟ ନିଷ୍ପ୍ରୟୋଜନ । ସ୍ଥୂଳରେ ଏତିକି କୁହାଯାଇ-ପାରେ ଯେ ଏହି ଦୁର୍ଭିକ୍ଷରୂପୀ ଖଣ୍ଡପ୍ରଳୟରେ ଓଡ଼ିଶାର ପ୍ରାୟ ଗୃହପଣ ଲୋକ ମୃତ୍ୟୁମୁଖରେ ପଡ଼ିଥିଲେ ।

ଅସ୍ମାନଙ୍କର ପ୍ରଜାବତ୍ସଳ ଗବର୍ଣ୍ଣମେଣ୍ଟ ସେତେବେଳେ ଏହି ଦୁର୍ଭିକ୍ଷ-ମହାବ୍ୟାଧିର ଉପଶମ ନିମନ୍ତେ ପ୍ରଭୂତ ଯତ୍ନ କରିଥିଲେ । ସ୍ଥାନେ ସ୍ଥାନେ ଅନ୍ନଛତ୍ର ବସାଇ ଅନଶନକ୍ଲିଷ୍ଟ ଓ ନିରନ୍ନ ଲୋକମାନଙ୍କୁ ଭୋଜନ ଦିଆଯିବାର ବ୍ୟବସ୍ଥା କରାଯାଇଥିଲା । ଅନ୍ନଛତ୍ର ବସିବା ପୂର୍ବରୁ ଲୋକଙ୍କୁ କାର୍ଯ୍ୟରେ ଲଗାଇ ସେମାନଙ୍କ ଶ୍ରମମୂଲ୍ୟସ୍ୱରୂପ ଚାଉଳ ଦିଆଯାଉଥିଲା । ସରକାର ବାହା-ଦୂର ରାଜକୀୟ ସଂବାଦପତ୍ରରେ ଓଡ଼ିଶା ଦୁର୍ଭିକ୍ଷବାର୍ତ୍ତା ପ୍ରଚାର କରିବାଦ୍ୱାରା ବିଭିନ୍ନ ପ୍ରଦେଶରୁ ସଂଗୃହୀତ ଅନେକ ଅର୍ଥ ସାହାଯ୍ୟ ନିମିତ୍ତ ଆସିଥିଲା । ସର-କାର ବହୁସହସ୍ର ଟଙ୍କାର ଚାଉଳ ଆଣାଇ ପ୍ରତିଜିଲ୍ଲାର କେନ୍ଦ୍ରସ୍ଥଳମାନଙ୍କରେ ବଣ୍ଟାଇଥିଲେ । ଜିଲ୍ଲାର ମାଜିଷ୍ଟ୍ରେଟମାନେ ଅନେକ ସୁଚରିତ୍ର ସ୍ୱତଃପ୍ରବୃତ୍ତ ଲୋକଙ୍କୁ ଏହି କାର୍ଯ୍ୟରେ ନିଯୁକ୍ତ କରି ନାନାସ୍ଥାନକୁ ପଠାଇଥିଲେ । କିନ୍ତୁ ତଥାପି ଅନେକ ଲୋକ ଜାତିକୁଳର ଅଭିମାନବଶତଃ ଏହି ବିତରିତ ତଣ୍ଡୁଳ ଗ୍ରହଣ କରିବାକୁ କୁଣ୍ଠିତ ହୋଇ ଆପେ ଆପଣା ପ୍ରାଣଘାତର କାରଣ ହୋଇଥିଲେ । ସେଭଳି

ଲୋକମାନଙ୍କର ପ୍ରାଣରକ୍ଷା ପାଇଁ ଭିନ୍ନ ଉପାୟ ମଧ୍ୟ ଅବଲମ୍ବିତ ହୋଇଥିଲା । ଉତ୍କଳର ତଦାନୀନ୍ତନ ଲୋକପ୍ରିୟ କମିଶନର ମହାମତି ରେଭେନ୍ସା ସାହେବ ପ୍ରଜାମାନଙ୍କର ସାହାଯ୍ୟ ଲାଗି ପ୍ରାଣପଣେ ଯତ୍ନ କରିଥିଲେ । ତାହାଙ୍କ ପ୍ରବର୍ତ୍ତନାରେ ଅନେକ ଧନାଢ୍ୟ ବଦାନ୍ୟ ବ୍ୟକ୍ତିଙ୍କର ଯଥେଷ୍ଟ ଅର୍ଥର ସାହାଯ୍ୟସହ ପ୍ରଜାମାନଙ୍କୁ ଧାନଚାଉଳ ବିତରଣ କରିଥିଲେ । କିନ୍ତୁ ତଥାପି ସେକାଳରେ ଅନ୍ତର୍ଜାଲିପରି ସଡ଼କ ଓ ରେଲବାଟ ନ ଥିବାରୁ ଦୂରରୁ ଚାଉଳ ଆଣାଇବାକୁ ଅସୁବିଧା ଘଟି ସମସ୍ତ ଯତ୍ନ ବିଫଳ ହୋଇଥିଲା । ହୋତ-ପ୍ରାପ୍ତ ସହସ୍ର ସହସ୍ର ମହାପ୍ରାଣୀ ମୃତ୍ୟୁ-ସିନ୍ଧୁ ମୁଖରେ ପତିତ ହୋଇଥିଲେ । ବହୁକାଳଯାଏ ଦେଶବାସୀ ଏ ଦୁର୍ଭିକ୍ଷରୂପୀ ପ୍ରଳୟକୁ ପାସୋରି ପାରି ନ ଥିଲେ । ରେଭେନ୍ସାଙ୍କ ଭଳି ରାଜପୁରୁଷ ମଧ୍ୟ ସେ କଷ୍ଟ ସ୍ମରଣରେ ଅନୁତାପଦଗ୍ଧ ହୋଇ ବହୁକାଳଯାଏ ଦୁଃଖ ଓ ସମବେଦନା ପ୍ରଦର୍ଶନ କରିଅଛନ୍ତି ।

ଏହି ନଅଙ୍କ ଦୁର୍ଭିକ୍ଷଉତ୍ତରେ ପ୍ରାୟ ଅର୍ଦ୍ଧଶତାବ୍ଦୀ ହେଲା ଓଡ଼ିଶାରେ ନୂତନଜୀବନର ଆରମ୍ଭ ହୋଇଅଛି । ଦାବାନଳଦଗ୍ଧ ଅରଣ୍ୟମଧ୍ୟରେ ଅଙ୍କୁରିତ ନବଦ୍ରୁମ ପ୍ରାୟ ଯେଉଁମାନେ ସେଥିରୁ ବର୍ତ୍ତିଗଲେ ସେମାନେ ପୂର୍ବଦଶା ସ୍ମରଣରେ ସାବଧାନ ହୋଇ ନବ ନବ ବୃତ୍ତି ଅବଲମ୍ବନ କଲେ । ଶ୍ରମଜୀବୀମାନେ ମଧ୍ୟ ଆଉ ପୂର୍ବପରି ଶ୍ରମବିମୁଖ ନ ହୋଇ ନାନାକ୍ଷେତ୍ରରେ ଶ୍ରମ କରି କିଛି କିଛି ଉପାର୍ଜନ କରିବାକୁ ଶିଖିଅଛନ୍ତି । ଏହି ଦୁର୍ଭିକ୍ଷପରେ ଅସ୍ମମାନଙ୍କର ଦୟାଳୁ ଗବର୍ଣ୍ଣମେଣ୍ଟ ମଧ୍ୟ ଏ ଦେଶର ଉନ୍ନତି କଳ୍ପେ ଅନେକ ଦେଶହିତକର ଅନୁଷ୍ଠାନ କରିଅଛନ୍ତି । ସେହିଦିନଠାରୁ ନୂତନ ରାଜମାର୍ଗ ନିର୍ମାଣ, କୁଲ୍ୟାଖନନ, ଚିକିତ୍ସାଳୟସ୍ଥାପନ ସଙ୍ଗେ ସଙ୍ଗେ ବିଭିନ୍ନ ପ୍ରକୃତିର ଉଚ୍ଚ ବିଦ୍ୟାଳୟମାନ ସ୍ଥାପିତ ହୋଇ ସର୍ବସାଧାରଣଙ୍କର ଉନ୍ନତି-ପଥ ଉନ୍ମୁକ୍ତ ହେଲା । ଲୋକେ ନାନାକ୍ଷେତ୍ରରେ ପ୍ରବେଶ କରିବାର ସୁବିଧା ପାଇ ଅପ୍ରମତ୍ତ ବିଧାନରେ ତତ୍ପର ହୋଇଅଛନ୍ତି । ଏହିରୂପେ ଦୁର୍ଭିକ୍ଷ ସମସ୍ତଙ୍କୁ ମହାଶିକ୍ଷା ଦେଇଯାଇଅଛି । ଯେଉଁମାନେ ସେହି ଗୁରୁଦେବଙ୍କ ପାସୋରି ନାହାନ୍ତି ସେହିମାନେ ଆପଣାର ବର୍ତ୍ତମାନ ଭବିଷ୍ୟତ ପ୍ରତି ସର୍ବଦା ସାବଧାନ ।

# ନୀତି-ସ୍ତବକ ।

ଜନକ ଜନନୀ ସମ ହିତକାରୀ ନାହାନ୍ତି ଜଗତେ
ତାଙ୍କ ହିତ ପାଇଁ ସଦେ ସେବାଧର୍ମେ ରହିବ ନିରତେ ।
ପିତୃସମ ପୂଜ୍ୟ ଗୁରୁ ଜ୍ଞାନଦାତା ହିତୈଷୀ ତୁମ୍ଭର
ଜ୍ୟେଷ୍ଠ ଭ୍ରାତା ବନ୍ଧୁଜନେ ଭକ୍ତିଯୁକ୍ତ ଥିବ ନିରନ୍ତର ।
ବୋଲନ୍ତି ବୁଧେ ଶ୍ରେଷ୍ଠ ସବୁ ଦାନେ ଅଭୟ ପ୍ରଦାନ
ତାହା ଯେ କରନ୍ତି ରାଜା ତାଙ୍କୁ କର ଭକ୍ତି ପ୍ରତିଦାନ ।
ଦୀନହୀନ୍ ହେଉ ପଛେ ଜାଣିବ ହେ ଈଶ୍ୱର ସନ୍ତାନ
ବଡ଼ ସାନ ସର୍ବଜନେ ରଖିଥିବ ସଦା ସମଜ୍ଞାନ ।

---

ଯେ ଯେ ଆପଣାର ବନ୍ଧୁ ମର୍ତ୍ତ୍ୟକୁ ଯେ ଗଣେ ନିଜ ବଶେ
ଯେ ଯେ ସେ ଆପଣା ଶତ୍ରୁ, ଅଯତ୍ନ ଯେ ନ କରେ ମାନସେ ।
ଉନ୍ମତ୍ତ ବାଞ୍ଛା ହେ ଯଦି ତେଜ ନିଦ୍ରା ଆଳସ୍ୟ ବହନ
ଭୀରୁତା ଦୀର୍ଘସୂତ୍ରତା କୋପ ଆଉ କାପୁରୁଷପଣ ।
ଅହିଂସା, ସାରଲ୍ୟ, ସତ୍ୟ, ଦୟା ଆଉ ଇନ୍ଦ୍ରିୟସଂଯମ
ସୁଖେ ଦୁଃଖେ ସହିଷ୍ଣୁତା କ୍ଷମାଗୁଣେ ଜାଣିବ ହେ ଧର୍ମ ।
ବିପଦେ ଅଧୀର ଜଂବା ସମ୍ପଦରେ ନୋହିବ ହେ ମତ୍ତ
କର୍ମକ୍ଷେତ୍ରେ ହୁଅ ବୀର ଯଶକାମୀ ଶାସ୍ତ୍ରଜ୍ଞାନ-ରତ ।

---

ନୁହେ ସେହି ବ୍ରହ୍ମଘାତୀ ବ୍ରହ୍ମହତ୍ୟା କରେ ଯେଉଁ ନର
ଯେବା ସଦା ଅକାରଣେ ଜୀବହିଂସା କରେ ଯେ କେବଳ ।
ସର୍ବଦା ଅଧର୍ମୀବୃନ୍ଦରେ ମିଥ୍ୟାଜାଲେ ରତ ଯେଉଁ ଜନ,
କ୍ଷୁଧାତୃଷାତୁର ଜନେ ଯଶା ଦେଇ କରେ ଯେ ବାରଣ,

ଅନ୍ଧ ପଙ୍ଗୁ ଅକ୍ଷମର ସର୍ବସ୍ୱ ଯେ କରଇ ହରଣ,
ଆଶ୍ରମେ ବା ଗ୍ରାମେ ପୁରେ କରଇ ଯେ ଅଗ୍ନି ସଂଯୋଜନ,
ନ ବୁଝି ଯେ ଶାସ୍ତ୍ରତତ୍ତ୍ୱ ଲୋକେ କରେ କୁଜ୍ଞାନ ପ୍ରଚାର,
ତାଙ୍କୁ ବ୍ରହ୍ମଘାତୀ ବୋଲି କହିଛନ୍ତି ପୂର୍ବ ଶାସ୍ତ୍ରକାର ।

କଣ୍ଠେ ହାର ବା କଙ୍କଣ
ଏ ନୁହେ ନରର ଭୂଷଣ ।
ସୁନ୍ଦର ମୁଖ ଚକ୍ଷୁ କେଶ
ଏଥିରେ ନାହିଁ ରୂପ ଲେଶ ।
ଏକାହିଁ ବିଦ୍ୟା ଅଳଙ୍କାର
ମଣ୍ଡଇ ବପୁ ସଭଙ୍କର ।
ଯେବେଟି ଅଛି ସେ ସମ୍ବଳ
ଅନ୍ୟ ସମ୍ପଦେ କିବା ଫଳ ?

---

# ହସ୍ତୀ ।

ସ୍ତନ୍ୟପାୟୀ ଚତୁଷ୍ପଦ ପ୍ରାଣୀମାନେ ପ୍ରଧାନତଃ ଦୁଇଭାଗରେ ବିଭକ୍ତ । ନିରାମିଷଭୋଜୀ ଓ ଆମିଷଭୋଜୀ । ଭାରତବର୍ଷରେ ଅନେକ ପ୍ରକାର ନିରାମିଷ-ଭୋଜୀ ଚତୁଷ୍ପଦ ଜନ୍ତୁ ଅଛନ୍ତି । ସେମାନଙ୍କ ମଧ୍ୟରେ ହସ୍ତୀ, ଅଶ୍ୱ, ଗୋରୁ, ମେଷ, ଛାଗ, ହରିଣ, ଉଷ୍ଟ୍ର ଏବଂ ଗଣ୍ଡାର ପ୍ରଭୃତି ପ୍ରଧାନ । ଏମାନଙ୍କ ମଧ୍ୟରୁ କେବଳ ହସ୍ତୀର ବିବରଣ ନିମ୍ନରେ ବିବୃତ ହେଲା ।

ସ୍ଥଳଚର ପ୍ରାଣୀମାନଙ୍କ ମଧ୍ୟରେ ହସ୍ତୀ ସର୍ବାପେକ୍ଷା ବୃହତ୍ତମ । ହସ୍ତୀର ଉଚ୍ଚତା ଛଅହସ୍ତରୁ ଅଠହସ୍ତ ପର୍ଯ୍ୟନ୍ତ ହୁଏ । ଏହାର ଶରୀର ଧୂସରବର୍ଣ୍ଣ, ଏହାର ଚାରିଗୋଟି ଗୋଡ଼ ଚାରିଗୋଟି ପ୍ରକାଣ୍ଡ ସ୍ତମ୍ଭ ତୁଲ୍ୟ । ପ୍ରତ୍ୟେକ

ପାଦରେ ପାଞ୍ଚଗୋଟି ଲେଖାଏଁ ନଖ ଅଛି । ଏହାର ମସ୍ତକ ଅତି ବୃହତ୍ ଏବଂ ଗ୍ରୀବା କ୍ଷୁଦ୍ର ; ଚକ୍ଷୁଦୁଇଟି ଶରୀର ତୁଳନାରେ ଅତି କ୍ଷୁଦ୍ର ଓ କାନଦୁଇଟି କୁଲା-ପରି ବଡ଼ । ଏହାର ଗୋଟିଏ କ୍ଷୁଦ୍ର ଲାଙ୍ଗୁଳ ଅଛି । ସେହି ଲାଙ୍ଗୁଳରେ ଲମ୍ବ ଲମ୍ବ ଲୋମ ବିରଳଭାବରେ ଥାଏ । ହସ୍ତୀ ଶରୀରରେ ଲୋମ ମଧ୍ୟ ଅତି ବିରଳ । ଏହାର ଦୁଇଗୋଟି ବଡ଼ ବଡ଼ ଦନ୍ତ ମୁଖର ବାହାରକୁ ବାହାରିଥାଏ । ଏହି ଦନ୍ତ ଚାରିହାତ ପର୍ଯ୍ୟନ୍ତ ଲମ୍ବା ହୁଏ । ଏହି ଦନ୍ତ ଅତି ଶୁଭ୍ର ଓ ଚିକ୍କଣ ; ଏଥିରେ ପାଲିଙ୍କି, ପଲଙ୍କ, ପଣାକାଠି, ପାନିଆ, ଫରୁଆ, ଚୁଡ଼ି ଓ ବୋତାମ ପ୍ରଭୃତି ନାନାପ୍ରକାର ସୂକ୍ଷ୍ମଶିଳ୍ପବିଶିଷ୍ଟ ବହୁମୂଲ୍ୟ ସାମଗ୍ରୀ ପ୍ରସ୍ତୁତ ହୁଏ । ହାତିଦାନ୍ତଗୁଡ଼ିକ ହସ୍ତୀର ଜୀବିତାବସ୍ଥାରେ ମଧ୍ୟ କରତଦ୍ୱାରା କଟାହୋଇ ବହୁମୂଲ୍ୟରେ ବିକ୍ରୀତ ହୁଏ ।



ହସ୍ତୀ ।

ହସ୍ତୀର ନାସା ଅତିଶୟ ଲମ୍ବ । ଏହାକୁ ଶୁଣ୍ଢ ବୋଲାଯାଏ । ଶୁଣ୍ଢ ପ୍ରାୟ ଚାରିହାତ ପର୍ଯ୍ୟନ୍ତ ଲମ୍ବା । ଏହି ଶୁଣ୍ଢର ଅଗ୍ରଭାଗରେ ଦୁଇଟି ଛିଦ୍ର ଅଛି ।

ଏହି ଛିଦ୍ରଦ୍ୱାରା ହସ୍ତୀ ନିଶ୍ୱାସ ଗ୍ରହଣ କରେ ଏବଂ ଜଳାଶୟରୁ ଜଳ ଶୋଷି-ନେଇ ମୁଖରେ ତାହା ପାନ କରେ । ହସ୍ତୀ ଗ୍ରୀଷ୍ମ ଅନୁଭବ କଲେ ଏହି ଶୁଣ୍ଢରେ ଜଳ ଶୋଷିନେଇ ସର୍ବାଙ୍ଗରେ ସେଚନ କରେ । ଏହି ଶୁଣ୍ଢଟି ହସ୍ତର କାର୍ଯ୍ୟ କରେ ବୋଲି ଏହାର ଗୋଟିଏ ନାମ "ହସ୍ତ" ଅଛି । ଏହି ହସ୍ତ ଥିବାରୁ "ହସ୍ତୀ" ନାମ ସାର୍ଥକ ହୋଇଅଛି । ହସ୍ତୀ ଶୁଣ୍ଢଦ୍ୱାରା ଖାଦ୍ୟସାମଗ୍ରୀ ଉତ୍ତୋଳନ କରିପାରେ ଏବଂ କ୍ଷୁଦ୍ର କ୍ଷୁଦ୍ର ପଦାର୍ଥ ମଧ୍ୟ ଭୂମିରୁ ଉଠାଇନିଏ । ଏହି ଶୁଣ୍ଢଟି ପଞ୍ଚ ସହସ୍ର ଭିନ୍ନ ଭିନ୍ନ ପେଶୀଦ୍ୱାରା ଗଠିତ ହୋଇଥିବାରୁ ଅତି ସବଳ ଏବଂ ବୃକ୍ଷର ବଡ଼ ବଡ଼ ଡାଳ ଭାଙ୍ଗିବାକୁ ସମର୍ଥ ହୁଏ । ହସ୍ତୀ ଶୁଣ୍ଢ ଏବଂ ଦନ୍ତ ସାହା-ଯ୍ୟରେ ସିଂହ, ବ୍ୟାଘ୍ର ପ୍ରଭୃତି ଦୁର୍ଦ୍ଦାନ୍ତ ଶତ୍ରୁମାନଙ୍କ ଆକ୍ରମଣରୁ ଆତ୍ମରକ୍ଷା କରେ ; ସମୟ ସମୟରେ ମଧ୍ୟ ଶତ୍ରୁର ପ୍ରାଣ ସଂହାର କରେ ।

ହସ୍ତୀ ସ୍ୱଭାବତଃ ଅତି ଭୀରୁ ଏବଂ ଶାନ୍ତପ୍ରକୃତିକ କିନ୍ତୁ ଅତିଶୟ ବୁଦ୍ଧିମାନ୍ । ହସ୍ତୀ ସହଜରେ ପୋଷ ମାନେ ଓ ମନୁଷ୍ୟମାନଙ୍କର ବିଶେଷ ଉପକାରରେ ଆସେ । ହସ୍ତୀ ପୃଷ୍ଠରେ ଅନେକଗୁଡ଼ିଏ ଲୋକ କିଂବା ଭାରୀ ବୋଝ ଅନେକ ଦୂରକୁ ବହିନେଇ ଯାଇପାରେ । କୌଣସି କୌଣସି ସ୍ଥାନରେ ହସ୍ତୀମାନେ ମଧ୍ୟ ହଳ କରନ୍ତି । ହସ୍ତୀମାନେ ପୂର୍ବକାଳରେ ଯୁଦ୍ଧକ୍ଷେତ୍ରରେ ବ୍ୟବହୃତ ହେଉ-ଥିଲେ । ଯୋଦ୍ଧାମାନେ ହସ୍ତୀପୃଷ୍ଠରେ ବସି ଶର କିମ୍ବା ବର୍ଚ୍ଛା ଚାଳନ କରୁ-ଥିଲେ । ଆଜି କାଲି ସ୍ଥାନାନ୍ତରକୁ ଅନ୍ୟ ଯାନ ବା ବାହନରେ ଯାତ୍ରା କରିବାର ଅସୁବିଧା ହେଲେ କିମ୍ବା ବଡ଼ ବଡ଼ ଉତ୍ସବ ଉପଲକ୍ଷରେ ଆବଶ୍ୟକ ହେଲେ ରାଜା ବା ବଡ଼ଲୋକମାନେ ହସ୍ତୀ ବ୍ୟବହାର କରିଥାନ୍ତି ।

ହସ୍ତୀମାନେ ଦଳବଦ୍ଧ ହୋଇ ଅରଣ୍ୟରେ ବାସ କରନ୍ତି । ପ୍ରତ୍ୟେକ ଦଳରେ ଗୋଟିଏ ଗୋଟିଏ ଦନ୍ତାହାତୀ ଥାନ୍ତି । ସେମାନେ ଅତି ଦୁର୍ଦ୍ଦାନ୍ତ ଏବଂ ଉଚ୍ଛୃଙ୍ଖଳ । ଅରଣ୍ୟମଧ୍ୟରେ ଅନେକ ମନୁଷ୍ୟ ଦନ୍ତାହାତୀମାନଙ୍କଦ୍ୱାରା ହତ ହୋଇଥିବାର ଶୁଣାଯାଇଅଛି ।

ଭାରତବର୍ଷମଧ୍ୟରେ ହିମାଳୟର ଦକ୍ଷିଣସ୍ଥ ତରାଇ ପ୍ରଦେଶରେ, ଅସା-ମରେ, ଓଡ଼ିଶାର ଗଡ଼ଜାତମାନଙ୍କରେ ଏବଂ ମହୀଶୂରଠାରୁ କୁମାରିକା ପର୍ଯ୍ୟନ୍ତ

ସମସ୍ତ ଅରଣ୍ୟମୟ ପ୍ରଦେଶରେ ବନ୍ୟହସ୍ତୀ ଦୃଷ୍ଟ ହୁଅନ୍ତି । ଏମାନେ ଦଳବଦ୍ଧ ହୋଇ ଅରଣ୍ୟରେ ବାସ କରନ୍ତି । ଅରଣ୍ୟମଧ୍ୟସ୍ଥ ବୃକ୍ଷର ଡାଳ, ଛେଲ୍ଲି, ଫଳ, ମୂଳ, ଲତା ଓ ବନ୍ୟକଦଳୀ ପ୍ରଭୃତି ଖାଇ ଏମାନେ ପ୍ରାଣଧାରଣ କରନ୍ତି । ସମୟ ସମୟରେ ଏମାନେ ଶସ୍ୟକ୍ଷେତ୍ରକୁ ଆସି ଶସ୍ୟ ନଷ୍ଟ କରିପକାନ୍ତି । କୃଷକମାନେ ବାଜା ବଜାଇ ଓ ବନ୍ଧୁକ ଛାଡ଼ି ଏମାନଙ୍କ ଦୌରାତ୍ମ୍ୟରୁ ଶସ୍ୟ ରକ୍ଷା କରନ୍ତି ।

ଆଫ୍ରିକାର ଅରଣ୍ୟମୟ ପ୍ରଦେଶରେ ଏବଂ ସିଂହଳଦ୍ୱୀପରେ ମଧ୍ୟ ହସ୍ତୀ ଦେଖାଯାନ୍ତି । ସେମାନଙ୍କର କର୍ଣ୍ଣ ଓ ଦନ୍ତ ଭାରତବର୍ଷୀୟ ହସ୍ତୀମାନଙ୍କର କର୍ଣ୍ଣ ଓ ଦନ୍ତଠାରୁ ବୃହତ୍ତର ।

ଲୋକେ ବନ୍ୟହସ୍ତୀକୁ ନାନାପ୍ରକାର କୌଶଳରେ ଧରନ୍ତି । କୌଣସି କୌଣସି ସ୍ଥାନରେ ବଡ଼ ବଡ଼ ଗଣ୍ଡିକାଠମାନ ଚତୁର୍ଭୁଜାକାରରେ ଘନସନ୍ନି- ବିଷ୍ଟଭାବରେ ପୋତି ଗୋଟିଏ ଗଡ଼ ପ୍ରସ୍ତୁତ କରନ୍ତି ଏବଂ ସେହି ଗଡ଼ମଧ୍ୟରେ ଗୋଟିଏ ପୋଷା ହସ୍ତିନୀ ଛାଡ଼ିଦିଅନ୍ତି । ହସ୍ତୀ ହସ୍ତିନୀଦ୍ୱାରା ଆକୃଷ୍ଟ ହୋଇ ସେ ସ୍ଥାନକୁ ଆସିଲେ ଲୋକମାନେ ପ୍ରଚ୍ଛନ୍ନଭାବରେ ଉକ୍ତ ଗଡ଼ର ପ୍ରବେଶଦ୍ୱାର ବନ୍ଦ କରିଦେଇ ହସ୍ତୀକୁ କୌଶଳକ୍ରମେ ଧରନ୍ତି । ଆଉ କୌଣସି କୌଣସି ସ୍ଥଳରେ ବିଶେଷତଃ ଓଡ଼ିଶାର ଗଡ଼ଜାତମାନଙ୍କରେ ଲୋକମାନେ ହସ୍ତିବହୁଳ ଅରଣ୍ୟର ଏକ ସ୍ଥାନ ପ୍ରକାଣ୍ଡ କାଷ୍ଠପ୍ରାଚୀରଦ୍ୱାରା ବେଷ୍ଟନ କରନ୍ତି । ଏହାକୁ ଗେରିଦା ବା ଖେଦା ବୋଲାଯାଏ । ତହିଁ ମଧ୍ୟକୁ ପ୍ରବେଶ କରିବାପାଇଁ ଏକ ପାର୍ଶ୍ୱରେ ସ୍ୱଳ୍ପପ୍ରସାରବିଶିଷ୍ଟ ଗୋଟିଏ ଦ୍ୱାର ଥାଏ । ଅରଣ୍ୟ ମଧ୍ୟରେ ବାଜା ବଜାଇ ଓ ଶବ୍ଦ କରି ବନ୍ୟ ହସ୍ତୀମାନଙ୍କୁ ବହୁଦୂରରୁ ତଡ଼ିଆଣିଲେ ସେମାନେ କ୍ରମେ କ୍ରମେ ଆସି ଉକ୍ତ ଗେରିଦା ମଧ୍ୟରେ ପ୍ରବେଶ କରନ୍ତି । ସେହି ସମୟରେ ଲୋକେ ଲୁକ୍କାୟିତଭାବରେ ପ୍ରବେଶ ପଥ ବନ୍ଦ କରିଦିଅନ୍ତି । ଏପରି ଅବ- ସ୍ଥାରେ କିଛିଦିନ ରହିଲାପରେ ହସ୍ତୀ ଖାଦ୍ୟାଭାବରୁ ଟିକିଏ ନିସ୍ତେଜ ଓ ଦୁର୍ବଳ ହୋଇପଡ଼ିଲେ ଲୋକମାନେ ଅନ୍ୟ ଶିକ୍ଷିତ ହସ୍ତିପୃଷ୍ଠରେ ଆରୋହଣ କରି ତାହା ନିକଟକୁ ଯାନ୍ତି ଏବଂ ପୋଷା ହସ୍ତୀ ଦ୍ୱାରା ଉକ୍ତ ବନ୍ୟହସ୍ତୀର ଗୋଡ଼ରେ

ଲୌହଶୃଙ୍ଖଳ ଲଗାଇ ତାହାର ଅପର ପାର୍ଶ୍ବ ବଡ଼ ବଡ଼ ବୃକ୍ଷରେ ବାନ୍ଧି ଦିଅନ୍ତି । ହସ୍ତୀ ଏପରି ଅବସ୍ଥାରେ ଥିବା ସମୟରେ ମାହୁନ୍ତ ପ୍ରତିଦିନ ତାହା ନିକଟକୁ ଯାଇ ପୋଷା ମନାଉଥାଏ । ଏପରି କେତେକ ଦିନ ଉତ୍ତାରେ ହସ୍ତୀଟି ସମ୍ପୂର୍ଣ୍ଣରୂପେ ପୋଷା ମାନିଯାଏ ।

କନିକାର ରାଜା ଶ୍ରୀ ରାଜେନ୍ଦ୍ରନାରାୟଣ ଭଞ୍ଜ ଦେବ ମହୋଦୟ ୧୯୧୮ ଖ୍ରୀଷ୍ଟାବ୍ଦରେ ଢେଙ୍କାନାଳର ଜଙ୍ଗଲରେ ଯେଉଁ ବନ୍ୟ ଦନ୍ତାବଳକୁ ଗୁଳିରେ ମାରିଥିଲେ ସେପରି ପ୍ରକାଣ୍ଡକାୟ ହସ୍ତୀ ଭାରତବର୍ଷ ମଧ୍ୟରେ ଅତି ଅଳ୍ପ ଦେଖାଯାଇଅଛି । ସେ ହସ୍ତୀର ପ୍ରତ୍ୟେକ ଦନ୍ତ ପ୍ରାୟ ସାଢ଼େ ଚାରି ହାତରୁ ଅଧିକ ଲମ୍ବ ଥିଲା । ଉକ୍ତ ହସ୍ତୀର ଦନ୍ତ ସହିତ ମୁଣ୍ଡ କଟକସ୍ଥ କନିକା ରାଜ-ବାଟୀରେ ସୁରକ୍ଷିତ ହୋଇଅଛି ।

---

## ବୁଦ୍ଧଦେବଙ୍କ ସନ୍ନ୍ୟାସ ।

ଗଭୀର ନିଶୀଥ, କିବା କୃଷ୍ଣ ଆବରଣେ
ଘୋଡ଼ାଇ ରଖିଛି ପୁରବାସୀ ଲୋକଗଣେ ।

ଉତ୍ସବ ଶେଷରେ ଅବସାଦେ ନିଦ୍ରାଗତ
ରାଜପୁରୀ ଦୌବାରିକ ପ୍ରହରୀ ସମସ୍ତ ।

ଥିଲା ଅବା କାହା ମନେ ନିର୍ମମ ହୃଦୟେ,
ରାଜପୁତ୍ର ପୁର ତେଜି ଯିବେ ଅସମୟେ ।

ଶିଶୁ କୋଳେ ଗୋପାବଧୂ, ମାତା ପ୍ରଜାବତୀ,
ପୁରବାସୀ ନରନାରୀ ସୁଖେ ଶୋଇଛନ୍ତି ।

ରାଜଅନ୍ତଃପୁରେ ବୃଦ୍ଧ ନୃପତି କେବଳ
ପଡ଼ିଛନ୍ତି ଧ୍ୟାନଯାଇ, ନେତ୍ରେ ବହେ ଜଳ ।

ଏଣେ ରାଜପୁତ୍ର ଅଶ୍ୱ ଯାଏ ଧୀରେ ଧୀରେ,
ନୀରବେ ଛନ୍ଦକ ପଛେ ଭାସେ ଅଶ୍ରୁ-ନୀରେ ।

ଅଶ୍ୱପୃଷ୍ଠେ ରାଜପୁତ୍ର, ନାହିଁ ଖେଦ ଭୟ,
ନାହିଁ ଦୈନ୍ୟ, ମାୟା, ମୋହ, ନିଃଶଙ୍କ ହୃଦୟ,

ପ୍ରଫୁଲ୍ଲ, ପ୍ରସନ୍ନ ମୁଖ, ସ୍ଥିର ଶାନ୍ତ ମୂର୍ତ୍ତି,
ନୈଶାକାଶେ ବିରାଜିତ ସ୍ଥିର ଚନ୍ଦ୍ରଜ୍ୟୋତି ।

ଦେଖିଲେ ଛନ୍ଦକ ଯେତ୍ତେ କରି ଅଗ୍ରେ ଦୃଷ୍ଟି,
ବଜାଇ ମଙ୍ଗଳ ବାଦ୍ୟ କରି ପୁଷ୍ପବୃଷ୍ଟି ।

ଚାଲିଛନ୍ତି ଦେବଦେବୀଗଣ, ଆନନ୍ଦରେ,
ମାର୍ଗକୁ ମଣ୍ଡାଇ ଅଶ୍ୱବାର ସମ୍ମୁଖରେ ।

ଶାକ୍ୟବଂଶ ରାଜଲକ୍ଷ୍ମୀ ପଶ୍ଚାତେ ଯେସନେ,
ଚାଲିଛନ୍ତି ଧୀରେ ଅଶ୍ରୁପୂରିତ ନୟନେ ।

ଢାଳୁଛି ସୁଧାଂଶୁ ସୁଧା, ପ୍ଲାବିତ ନଗରୀ,
ଗଳିତ ରଜତ ସ୍ରୋତ ପଡୁଛି କି ଝରି ?

ଛନ୍ଦକ ପାରିଲେ ନାହିଁ ସହି ଆଉ ଥରେ,
ବୋଇଲେ ସିଦ୍ଧାର୍ଥେ କାନ୍ଦି ବିକଳ ସ୍ୱନରେ ।

ଯୁବରାଜ ! ଭୁଲିଗଲେ, ଶୈଶବେ ଜନନୀ,
ଅଙ୍କେ, ବକ୍ଷେ ଧରିଥିଲେ କରି ନେତ୍ରମଣି ।

କୈଶୋର ଯୌବନେ ତୁମ୍ଭ କ୍ରୀଡ଼ାର ପ୍ରାଙ୍ଗଣେ,
ଅନୁଗତ କ୍ରୀଡ଼ାରତ ଶାକ୍ୟ ଶିଶୁଗଣେ ।

ବୃଦ୍ଧ ପିତା, ବୃଦ୍ଧା ମାତା, ପ୍ରେମର ପ୍ରତିମା,
ସୁଶୀଳା ସୁରୂପା ଗୋପା ପ୍ରୀତି ମଧୁରିମା ।

ଭୁଲି ଦେଲେ ସଦ୍ୟଜାତ ଶିଶୁ ଭବିଷ୍ୟତ,
କି କରିବେ ପୁରବାସୀ ଅଶ୍ରୁ ସମସ୍ତ ।

ନ ଯାଅ ସକଳେ ଶୋକ ସାଗରେ ଭସାଇ,
ନ ଯାଅ ଅଶ୍ରୁତନନେ ଝନାଇ ଜନାଇ ।

ବୋଇଲେ ସହାସ୍ୟମୁଖେ ସିଦ୍ଧାର୍ଥ,—ଛନ୍ଦକ,
ନ ବୁଝି କଶେଷ ବୋଲ କଥା ଅନର୍ଥକ ।

ଦେଖ ଚାହିଁ, ସ୍ୱର୍ଗେ ବସି ଦେବଦେବୀ ସବେ
ଜଗତ ମଙ୍ଗଳେ ଛନ୍ତି ଆନନ୍ଦ ଉତ୍ସବେ ।

ନିର୍ମଳ ଗଗନେ ବହେ ଶୀତଳ ପବନ,
କରୁଛନ୍ତି ପୁଷ୍ପବୃଷ୍ଟି ଦେବଦେବୀଗଣ ।

କୃପାସିନ୍ଧୁ ଦୀନବନ୍ଧୁ ପ୍ରଭୁ ଭଗବାନ,
ନ ହେବ ନିର୍ଘୁଣ ଯାହା କରିବେ ବିଧାନ ।

ଶୁଭକାର୍ଯ୍ୟେ, ଶୁଭଦିନେ, ଶୁଭ ମୁହୂର୍ତ୍ତରେ,
ଘଟୁଛି ଯେ କାର୍ଯ୍ୟ, ତୁମ୍ଭେ ଦେଖ ଆନନ୍ଦରେ ।

ଶିକ୍ଷିତ ନର୍ତ୍ତନଶୀଳ ଘୋଟକ କଣ୍ଟକ,
ଯାଏ ଧୀରେ, ପଦ ଦେ ଶୁଭେ ଠକଠକ ।

ଅକ୍ଳାନ୍ତ ଅଭ୍ରାନ୍ତ ରୂପେ ଅବିରାମ ଗତି,
ଗଲା ରାଜ୍ୟସୀମା ତେଜି ନ ପାହୁଣୁ ରାତି ।

କ୍ରୋଡ୍ୟଦେଶ, ମଲ୍ଲଦେଶ, ରଜନୀ ଶେଷରେ,
ପ୍ରବେଶିଲେ ବେଗବନେ ଅନୋମା କୂଳରେ ।

ଅବତରି ଅଶ୍ୱୁ ଯୁବରାଜ ମହାମତି,
ବୋଇଲେ ଛନ୍ଦକେ ଧୀରେ, ଦେଲୁ ଅନୁମତି,

ଏହି ଅଶ୍ୱ, ମମ ବସ୍ତ୍ର, ଅଙ୍ଗ ଅଭରଣ,
ଘେନି ଶାକ୍ୟଦେଶେ କର ବାହୁଡ଼ା ଗମନ ।

ଛନ୍ଦକ ନିସ୍ତବ୍ଧ ରହି—ଅଛି ଏକ ଧ୍ୟାନେ,
ଦୁର୍ବଳ ଶରୀର, କଥା ଶୁଭୁ ନାହିଁ କାନେ ।

କ୍ଷଣକ ଉତ୍ତାରେ କାନ୍ଦି କଲା ହାହାକାର,
ବୋଇଲା ବିନୟେ ପଦ ଧରି ପୁନର୍ବାର ।

କି କହିଲ ପ୍ରଭୋ ! ଯେବେ ବୃଦ୍ଧ ନରପତି,
ପଚାରିବେ ଗୋପାଦେବୀ, ମାତା ପ୍ରଜାବତୀ,

ଅନ୍ଧକାରେ ଯୁବରାଜେ ଘେନିଗଲୁ କାହିଁ?
କି ଦେବି ଉତ୍ତର ବୋଲି ତାଙ୍କ ମୁଖ ଚାହିଁ ?

ବିଷାଦସାଗର ଯେବେ ପଡ଼ିବ-ଉଚ୍ଛୁଳି ।
କି ଦଶା ଘଟିବ ପୁରେ ପାରୁ ନାହିଁ କଳି!

ବାହୁଡ଼ି ନ ଯିବି ପୁଣି ସେ ମହା ଶ୍ମଶାନେ,
ଅଜ୍ଞାକର ଅନୁଗତ ଥାଉ ସନ୍ନିଧାନେ ।

ଥାଉ ଅନ୍ୟକଥା, କୃପାମୟ ତୁମ୍ଭ ପରି,
ପାଇବି ମୁଁ କାହିଁ ପ୍ରଭୁ ! ଥିବି ଅନୁସରି ।

ବୋଇଲେ କୁମାର, ଭଦ୍ର ! ମୋହ ସାଥ ମାର୍ଗେ,
ହେବ ବନ୍ଧ, କେବେଁ ଜାଣି ନ ଥିଲି ମୁଁ ଅଗେ ।

କେତେ ମାୟା-ଲତା କରି ଅଛି ଛେଦନ,
ବୋଲି ପୁଣି ମାୟାବୀଜ କରିବ ରୋପଣ ।

କାତର କରିବା ତୁମ୍ଭ ଉଚିତ ମନରେ,
ତେଜିଛି ଯେ ପିତା, ମାତା, ରମଣୀ, କୁମରେ ।

କେ ବା ତୁମ୍ଭ କଥା ଶୁଣେ? ବୃଥା ନିବେଦନ,
ବୃଥା କାର୍ଯ୍ୟ ପ୍ରତିବନ୍ଧ କର ଅକିଞ୍ଚନ ।

ବାହୁଡ଼ କପିଳବସ୍ତୁ ନଗରେ ସତ୍ୱର,
ଘେନ ଅଶ୍ୱ, ଅଳଙ୍କାର ସ୍ଥିର କର ମତି ।

ଜନକ ଜନନୀ ଗୋପା କାନ୍ଦିଲେ ମୋପାଇଁ,
କରିବ ସାନ୍ତ୍ୱନା ସବୁ କହିବ ବୁଝାଇ ।

ଯାଉଛି ସିଦ୍ଧାର୍ଥ ତତ୍ତ୍ୱମାର୍ଗ ଅନ୍ୱେଷଣେ,
ଲଭିବେ ନିର୍ବାଣ ମୁକ୍ତି ଯହିଁ ଲୋକଗଣେ ।

ଭୃଙ୍ଗଶ୍ରେଣୀକୃଷ୍ଣ ଦୀର୍ଘ କେଶକୁ ତକ୍ଷଣ
ଛେଦି ନିଜ ଖଡ୍ଗେ, ତେଜେ କୌଷେୟ ବସନ ।

ଦୀନଖଣ୍ଡ ଜୀର୍ଣ୍ଣବସ୍ତ୍ର ପିନ୍ଧିଲେ ତକ୍ଷଣେ,
ରହିଛି ଛନ୍ଦକ ଚାହିଁ ଚକିତ ନୟନେ ।

ନବୀନ ସନ୍ନ୍ୟାସୀ ରୂପ ଦେଖିଲା କଣ୍ଟକ,
କି ବୁଝିଲା ପଶୁ ଚାହିଁଅଛି ଭକଭକ ।

ନୀରବେ ବହୁଛି ଅଶ୍ରୁଧାର ଦ୍ୱିନୟନ,
ଭକ୍ତ ତେଏପିଲ୍ଲୀ କି ସ୍ଥିର କରି ତନୁ?

ସିଦ୍ଧାର୍ଥ ତା ଗଣ୍ଡେ ହସ୍ତ ସ୍ନେହରେ ବୁଲାଇ,
ବୋଇଲେ କଣ୍ଟକ ଅରେ! ଘରେ ରହ ଯାଇ ।

ମେଲାଣି ଦେଉଛି ବତ୍ସ! ଫେରିଯାଅ ଘରେ,
ତୋର ଏହି ଉପକାର ରହିଲା ମନରେ ।

ଛନ୍ଦକ କଣ୍ଟକ ଦୁହେଁ କାନ୍ଦିଲେ ବ୍ୟାକୁଳେ,
ଏକଧ୍ୟାନେ ଥାନ୍ତି ଚାହିଁ ଅଶ୍ରୁପୂର୍ଣ୍ଣ ଡୋଳେ ।

ନବୀନ ସନ୍ନ୍ୟାସୀ ସୁନନ୍ଦ ଧୀରେ ଧୀରେ
ପ୍ରଶାନ୍ତ ବଦନେ, ଦୃଷ୍ଟି ରହିଛି ମନ୍ଦିରେ ।
ଯେତେବେଳଯାଏ ଦଶୁଥିଲେ ସେ ନୟନେ,
ସତୃଷ୍ଣଦୃଷ୍ଟିରେ ଚାହିଁଥାନ୍ତି ବେନିଜନେ ।
ଅଦୃଶ୍ୟ ହୁଅନ୍ତେ ପ୍ରଭୁ, ହୋଇଣ କରୁଣ
ବାହୁଡ଼ିଲେ ବେନିପ୍ରାଣୀ ପକାଇ ନିଶ୍ୱାସ ।

(ଫକୀରମୋହନ)

---

## ରାଣା ଚଣ୍ଡସିଂହ ।

ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟଭାଗରେ ଯେଉଁ ମହାବୀର ହାମିର ମିବାରର ଲୁପ୍ତଗୌରବ ଯବନକବଳରୁ ଉଦ୍ଧାର କରିଥିଲେ, ରାଣା କ୍ଷେତ୍ରସିଂହ ବୀର୍ଯ୍ୟ, ସାହସ, ରଣକୁଶଳତା ଓ ଦୃଢ଼ପ୍ରତିଜ୍ଞତା ବିଷୟରେ ତାଙ୍କର ଉପଯୁକ୍ତ ପୁତ୍ର ଥିଲେ । ୧୩୬୫ ଖ୍ରୀଷ୍ଟାବ୍ଦରେ କ୍ଷେତ୍ରସିଂହ ଚିତୋରର ସିଂହାସନରେ ଅଧିରୂଢ଼ ହୋଇ ସ୍ୱରାଜ୍ୟରେ ଯବନବାହିନୀର ଗତିରୋଧ ନିମନ୍ତେ ପ୍ରଯତ୍ନବାନ୍ ହୋଇଥିଲେ । ରାଜତ୍ୱର ପ୍ରାୟ ଅଷ୍ଟାଦଶ ବର୍ଷ ଉତ୍ତାରେ ରାଣା ଲୋକାନ୍ତର ପ୍ରସ୍ଥାନ କରନ୍ତେ ତତ୍ପୁତ୍ର ଲକ୍ଷସିଂହ ଚିତୋରର ସିଂହାସନ ଅଲଙ୍କୃତ କରିଥିଲେ । ତାହାଙ୍କ ପ୍ରତାପରେ ଶତ୍ରୁସେନା ରାଜ୍ୟ ଆକ୍ରମଣ କରିବା ଦୂରେଣିକ ଥାଉ, ରାଜ୍ୟରେ ପଦାର୍ପଣ କରିବାକୁ ସାହସୀ ହୋଇ ନ ଥିଲେ । ଯବନପତି ମହମ୍ମଦସାହ ଲୋଦୀଙ୍କ ବିରୁଦ୍ଧରେ ଅସ୍ତ୍ରଧାରଣ କରି ଲକ୍ଷ ତାହାଙ୍କୁ ଉଚିତ ଶିକ୍ଷା ଦେଇଥିଲେ । ପବିତ୍ର ଗୟାକ୍ଷେତ୍ର ଯେତେବେଳେ ଶତ୍ରୁମାନଙ୍କ ଦ୍ୱାରା ଉପଦ୍ରୁତ ହେଲା, ସେତେବେଳେ ସିଂହବିକ୍ରମୀ ଲକ୍ଷ ଯାଇ ସେ କ୍ଷେତ୍ରକୁ ଉଦ୍ଧାର କରିଥିଲେ । ଧୀରେ ଧୀରେ ବିଜିତ ଶତ୍ରୁମାନଙ୍କଠାରୁ ଖଣ୍ଡେ ଖଣ୍ଡେ ରାଜ୍ୟ ଆଣି ମିବାରର ପୁଷ୍ଟି ସାଧନ କଲେ । ରାଣା ରାଜ୍ୟର ଉନ୍ନତିକଳ୍ପେ ନାନା ହିତକର

ଅନୁଷ୍ଠାନ କଲେ । କୂପ, ବାପୀ, ପୁଷ୍କରଣୀ, ମନ୍ଦିରାଦିରେ ରାଜ୍ୟ ଅପୂର୍ବଶ୍ରୀ ଧାରଣ କଲା । ରାଣା ଲକ୍ଷ ପୁଣି ସ୍ଥାପତ୍ୟବିଦ୍ୟାପ୍ରତି ବିଶେଷରେ ଅନୁରକ୍ତ ଥିବାରୁ ରାଜଧାନୀ ନାନା କୀର୍ତ୍ତି-ମୌକ୍ତିକ ମାଳାରେ ଭୂଷିତ ହେଲା । ନାନା ରତ୍ନଖଚିତ ଉତ୍ତୁଙ୍ଗ ପ୍ରାସାଦ ଓ ଧର୍ମମନ୍ଦିରମାନ ଚତୁର୍ଦ୍ଦିଗରେ ଚୂଡ଼ା ଉତ୍ତୋଳନ କରି ଯେପରି ସ୍ୱର୍ଗକୁ ଉପହାସ କଲା । ଫଳତଃ ଅତି ପଦ୍ମିନୀଭୂଷିତ ଯେଉଁ ପୁରୀ ଅଲ୍ଲାଉଦ୍ଦୀନଙ୍କ ଉପଦ୍ରବରେ ଶ୍ମଶାନରେ ପରିଣତ ହୋଇଥିଲା ସେ ଅମରାବତୀର କମନୀୟ ଶ୍ରୀ ଧାରଣ କରିଅଛି । ରାଣା ଚଣ୍ଡସିଂହ ଏହି ପ୍ରତାପୀ ଲକ୍ଷଙ୍କର ଜ୍ୟେଷ୍ଠପୁତ୍ର । ରାଜପୁତ ବୀରମାନଙ୍କ ଚରିତ୍ରରେ ଆତ୍ମତ୍ୟାଗବୃତ୍ତି ଯେପରି ଉଜ୍ଜ୍ୱଳଭାବରେ ବିକଶିତ ହୋଇଥିଲା, ଭାରତୀୟ ଅନ୍ୟ କୌଣସି ଜାତିର ଜୀବନରେ ସେପରି ଦେଖାଯାଏ ନାହିଁ । ଚଣ୍ଡସିଂହଙ୍କ ଜୀବନରେ ଆତ୍ମତ୍ୟାଗ ଓ ସତ୍ୟାନୁରାଗଗୁଣର ଯେପରି ପରିଚୟ ମିଳିଅଛି ତାହାର ଆଦର୍ଶ ମହାକବି ବେଦବ୍ୟାସ ଦ୍ୱାପରଯୁଗର ଭୀଷ୍ମଙ୍କ ଚରିତ୍ରରେ ପ୍ରଦର୍ଶନ କରିଅଛନ୍ତି । ଏ ଯୁଗରେ ସେପ୍ରକାର ଆତ୍ମତ୍ୟାଗ ଓ ସତ୍ୟନିଷ୍ଠା ଏକାନ୍ତ ବିରଳ । କବିକୁଳଗୁରୁ କାଳିଦାସପ୍ରମୁଖ କବିମାନେ ସ୍ୱ ସ୍ୱ କାବ୍ୟାଦିରେ ଏସବୁ ଗୁଣର ଅତି ଉତ୍କୃଷ୍ଟ ଆଦର୍ଶମାନ ପ୍ରଦର୍ଶନ କରିଅଛନ୍ତି । ସେସବୁ ଆମ୍ଭମାନଙ୍କ ଜୀବନରେ ଯଥେଷ୍ଟ ପ୍ରଭାବ ସ୍ଥାପନ କରିବାର ଉପଯୋଗୀ ଥିଲେ ସୁଦ୍ଧା ଆମ୍ଭେମାନେ ତାହା ଧାରଣ କରିପାରୁ ନାହିଁ । ତଥାପି ଭିନ୍ନ ଭିନ୍ନ ଆଦର୍ଶର ଶ୍ରବଣ ମନନଦ୍ୱାରା ଅଭ୍ୟାସକ୍ରମେ ଉପକାର ହୁଏ ବୋଲି ଏଠାରେ ଗୋଟିଏ ସେହିପ୍ରକାର ଦୃଷ୍ଟାନ୍ତ ପ୍ରଦତ୍ତ ହେଉଅଛି ।

ଏକଦା ରାଣା ଲକ୍ଷ ସଂଭ୍ରାନ୍ତସଭ୍ୟବର୍ଗ ପରିବୃତ ହୋଇ ରାଜସଭାରେ ବସିଅଛନ୍ତି, ଏହି ସମୟରେ ମାରବାରପତିଙ୍କର ଦୂତ ବିବାହର ସମ୍ମାନସୂଚକ ନାରିକେଳଫଳ ସହିତ ସଭାସ୍ଥଳରେ ଉପସ୍ଥିତ ହେଲେ । ତାହାଙ୍କୁ ଦେଖିଲାକ୍ଷଣି ରାଣା ଯଥୋଚିତ ସମ୍ମାନପ୍ରଦର୍ଶନପୂର୍ବକ ଆସନରେ ବସାଇଲେ ଏବଂ ମାରବାର ଜେମାଙ୍କ ସହିତ ପୁତ୍ର ଚଣ୍ଡସିଂହଙ୍କର ଶୁଭ ପରିଣୟ ପ୍ରସ୍ତାବ ଉପଲକ୍ଷରେ ନାରିକେଳ ପ୍ରେରିତ ହୋଇଥିବାର ଅନୁମାନ କରି ତାହାଙ୍କ ନିକଟକୁ

ସନ୍ଦେଶ ପ୍ରେରଣ କଲେ । ଚଣ୍ଡସିଂହ ସଭାସ୍ଥଳରେ ଉପସ୍ଥିତ ହେବା ଅବସର ମଧ୍ୟରେ ରାଣା ଏହିପରି ପରିହାସଚ୍ଛେଳତା ଦ୍ୱାରା ବୃଦ୍ଧଙ୍କର ଚିତ୍ତତୋଷଣ କରିବାକୁ ବସିଲେ, 'ସମ୍ଭବତଃ ଏ ନାରିକେଳ ଏ ଶ୍ମଶ୍ରୁଳ ବୃଦ୍ଧପାଇଁ ଆସି ନାହିଁ' । କିନ୍ତୁ ରାଣା ଜାଣି ନ ଥିଲେ ଯେ ତାଙ୍କର ଏହି ନର୍ମବାକ୍ୟ ପଶ୍ଚାତ୍‌ ବଡ଼ ମର୍ମ-ବିଦାରକ ହେବ । ପିତୃଭକ୍ତ ଚଣ୍ଡସିଂହ ଅନ୍ତରାଳରେ ଥାଇ ପିତାଙ୍କର ଏହି କଥା ଶୁଣି ପାରି ଥିଲେ । ତେଣୁ ସଭାସ୍ଥଳରେ ଯେତେ ତ୍ରଣ୍ଡ ପ୍ରଯତ୍ନ କଲେ ସୁଦ୍ଧା ସେ କଦାପି ବିବାହରେ ଅନୁମତି ଦେଲେ ନାହିଁ । ସମସ୍ତ ଯତ୍ନ ବ୍ୟର୍ଥ ହେଲା । ମହାକବି କହିଅଛନ୍ତି—'ସ୍ଥିର ନିଶ୍ଚୟ ମନ ଓ ନଦୀସ୍ରୋତର ଗତିରୋଧ ସମାନ' । ଚଣ୍ଡଙ୍କର ଚିତ୍ତପରିବର୍ତ୍ତନର ଆଶା ନ ଦେଖି ବୃଦ୍ଧ ରାଣା ବିଷମ ସମସ୍ୟାରେ ପଡ଼ିଲେ । ଉଭୟ ପାର୍ଶ୍ୱ ସମାନ ଭୟଙ୍କର ଦେଖି କାତର ହୋଇ-ପଡ଼ିଲେ । ଏଣେ ଯଦି ନାରିକେଳ ପ୍ରତ୍ୟର୍ପଣ କରନ୍ତି, ତାହାହେଲେ ମାରବାର ପତିଙ୍କର ଘୋର ଅପମାନ ; ତେଣେ ଗ୍ରହଣ କଲେ ଘୋର ମାନସିକ ଯାତନା, ଦୁଃସହ ଜନାପବାଦ ଓ ଲଜ୍ଜା । ପରିଶେଷରେ ଅନନ୍ୟୋପାୟ ହୋଇ ସ୍ୱୟଂ କନ୍ୟା ବିବାହରେ ସମ୍ମତି ପ୍ରଦାନ କଲେ ଏବଂ ଉକ୍ତ ପୁତ୍ରପ୍ରତି ଅତ୍ୟନ୍ତ ବିରକ୍ତ ହୋଇ ତତ୍କ୍ଷଣାତ୍‌ ଏହା ପ୍ରକାଶ କଲେ—'ଦେଖ ଚଣ୍ଡ, ଏ ରମଣୀଗର୍ଭରେ ଯଦି ପୁତ୍ର ଜନ୍ମେ ତାହାହେଲେ ସେ ରାଜା ହେବ ଏବଂ ତୁମ୍ଭକୁ ତାହାର ସାମନ୍ତ ହେବାକୁ ହେବ' । ସତ୍ୟପ୍ରତିଜ୍ଞ ଚଣ୍ଡ କ୍ଷଣକାଳ ତନ୍ମାତ୍ରସ୍ତିମିତଭାବରେ ରହି ଉନ୍ମୁଖ ସମସ୍ତ ସଭାସଦଙ୍କ ହୃଦୟରେ ବିସ୍ମୟ ଜନ୍ମାଇ ନିର୍ବିକାରଚିତ୍ତରେ ତାହା ସପଥପୂର୍ବକ ସ୍ୱୀକାର କଲେ । କି ଅପୂର୍ବ ପିତୃଭକ୍ତି! ସ୍ୱାର୍ଥତ୍ୟାଗର କି ଜ୍ୱଳନ୍ତ ନିଦର୍ଶନ !! ସତ୍ୟପ୍ରତି କି ଐକାନ୍ତିକ ଅନୁରାଗ !!

ବୃଦ୍ଧ ରାଣାଙ୍କ ସହିତ ମାରବାରପତି ରଣମଲ୍ଲଙ୍କ କନ୍ୟାର ଶୁଭ ପରିଣୟ ଯଥାବିଧି ସମ୍ପାଦିତ ହୋଇଗଲା ଅଥବା ଚଣ୍ଡଙ୍କ ସୌଭାଗ୍ୟଭୂମିରେ ବିଷବୀଜ ରୋପିତ ହେଲା । ଅଳ୍ପକାଳ ଉତ୍ତାରେ ନବୀନରାଣୀ ଗୋଟିଏ ପୁତ୍ର ପ୍ରସବ କଲେ । ରାଣା ତାହାର ମକୁଲଜୀ ନାମକରଣ କଲେ । କ୍ରମେ ବାର୍ଦ୍ଧକ୍ୟର ପୀଡ଼ନରେ ରାଣା ଆପଣାକୁ ରାଜ୍ୟ ପାଳନରେ ନିତାନ୍ତ ଅସମର୍ଥ ଜାଣି

ପୂର୍ବପୁରୁଷସେବିତ ଅରଣ୍ୟକବ୍ରତାଚରଣର ଉତ୍ସାହୀ ହେଲେ । ଇକ୍ଷ୍ୱାକୁବଂଶରେ ସୂର୍ଯ୍ୟବଂଶୀୟ ରାଜାମାନଙ୍କର ପୁତ୍ରହସ୍ତରେ ରାଜ୍ୟଭାର ପ୍ରଦାନ ପୂର୍ବକ ମୁନିବୃତ୍ତି ଗ୍ରହଣ କରିବା ପୁରାଣପ୍ରସିଦ୍ଧ । ରାଣା ଜ୍ୟେଷ୍ଠପୁତ୍ର ଚଣ୍ଡଙ୍କ ଅନୁରୋଧରେ କନିଷ୍ଠ ମକୁଳକୁ ସିଂହାସନରେ ବସାଇ ଏବ ଜ୍ୟେଷ୍ଠ ଉପରେ ରାଜ୍ୟଶାସନଭାର ଅର୍ପଣ କରି ଅରଣ୍ୟକୁ ପ୍ରସ୍ଥାନ କଲେ । ଏଣେ ଚଣ୍ଡସିଂହ ସ୍ନେହାଧୀନ କନିଷ୍ଠ ମକୁଳର ସକଳ ବିଷୟରେ ଉନ୍ନତି ଏବ ରାଜ୍ୟର ଶ୍ରୀବୃଦ୍ଧି ବିଧାନରେ ଯତ୍ନବାନ୍ ହେଲେ । ତାହାଙ୍କର ଶିକ୍ଷାଦାନ କୌଶଳରେ ମକୁଳ ପିତୃତୁଲ୍ୟ ଗୁଣଶାଳୀ ହେବାକୁ ଲାଗିଲେ । ଲୋକେ ଚଣ୍ଡଙ୍କର ଏହି ଅକପଟ ଭ୍ରାତୃସ୍ନେହ, ପିତୃଭକ୍ତି ଏବ ତ୍ୟାଗଶୀଳତା ଦେଖି ତାହାଙ୍କୁ ଶତ ଶତ ଧନ୍ୟବାଦ ଦେବାକୁ ଲାଗିଲେ । କିନ୍ତୁ ଏସମସ୍ତ ଅମୃତ ଜଣଙ୍କୁ କେବଳ ବିଷପ୍ରାୟ ବୋଧ ହୋଇଥିଲା । ରଣମଲ୍ଲ ନନ୍ଦିନୀ ମକୁଳ ଜନନୀ, ଚଣ୍ଡଙ୍କର ସମସ୍ତ ସଦ୍ବ୍ୟବହାରକୁ ବିଷବତ୍ ମଣି-ବାକୁ ଲାଗିଲେ । ଚଣ୍ଡର ଯଶ ବା ପ୍ରଶଂସା ତାଙ୍କ ହୃଦୟରେ ତୀକ୍ଷ୍ଣ ଛୁରିକାପ୍ରାୟ ପ୍ରବେଶ କରୁଥିଲା । ତାଙ୍କର ବିନୟୋଦାରମୂର୍ତ୍ତି କପଟର ଅବତାର ପ୍ରାୟ ବୋଧ ହେଉଥିଲା । ସେ ଅକାରଣ ଚଣ୍ଡଙ୍କର ଛିଦ୍ରାନ୍ୱେଷଣ କରି 'ହାଣ କୁରାଢ଼ୀ' ବେକକୁ ଆଣିଲେ । ମହାମତି ଚଣ୍ଡ ଏସବୁ ଜାଣିପାରି ଅତ୍ୟନ୍ତ ଘୃଣା ଓ କ୍ଷୋଭରେ ରାଜ୍ୟବିସର୍ଜ୍ଜନକୁ ଏ ରୋଗର ଏକମାତ୍ର ମହୌଷଧ ବୋଲି ସ୍ଥିର କଲେ ଏବ ରାଜଧାନୀ ତ୍ୟାଗ ସମୟରେ ଯଥାବିଧି ସମ୍ମାନ ପ୍ରଦର୍ଶନ ପୂର୍ବକ ବାଷ୍ପଗଦ୍ଗଦକଣ୍ଠରେ ବିମାତାଙ୍କୁ କହିଲେ "ଏ କୁଳର ମଙ୍ଗଳପ୍ରତି ଯେପରି ତୀକ୍ଷ୍ଣ ଦୃଷ୍ଟି ଥାଏ ଏବ ପ୍ରତ୍ୟେକ କାର୍ଯ୍ୟର ପରିଣାମ ଯେପରି ଚିନ୍ତା କରାଯାଏ । ମକୁଳର ଚିରକାଳ ମଙ୍ଗଳ ହେଉ ଏବ ତାହାର ପ୍ରଜାବର୍ଗ ନିତ୍ୟ ନିରାପଦ ଥାନ୍ତୁ, ଭଗବାନଙ୍କ ନିକଟରେ ଏହି ନିବେଦନ । କିନ୍ତୁ ମୋତେ ଦେଖାପଡ଼ୁଅଛି ଏପରି ଦିନ ଆସିବ, ଯେଉଁଦିନ ଏହି ଚଣ୍ଡ ଲାଗି ଆପଣଙ୍କୁ ବିହିତ ଅନୁତାପ କରିବାକୁ ହେବ ।"

ଚଣ୍ଡସିଂହ ଚିତୋର ପରିତ୍ୟାଗ କଲାକ୍ଷଣି ତଦାନୀନ୍ତନ ମୁନିରାଜ ତାଙ୍କର ଅସାଧାରଣ ଗୁଣାବଳୀରେ ପରିତୁଷ୍ଟ ହୋଇ ଖଣ୍ଡେ କ୍ଷୁଦ୍ର ରାଜ୍ୟ ପ୍ରଦାନ କଲେ ।

ଚଣ୍ଡ ସ୍ନେହ ରାଜ୍ୟର ଅଧିକାରୀ ହୋଇ ପରମଆନନ୍ଦରେ କାଳାତିପାତ କରିବାକୁ ଲାଗିଲେ । ଏଣେ ତାହାଙ୍କ ନିର୍ବାସନରେ ମକୁଳଜନନୀଙ୍କର ହୃଦୟ ପ୍ରଫୁଲ୍ଲ ହୋଇଉଠିଲା । ଏତେବେଳେ ପୂର୍ଣ୍ଣ ରାଜଶକ୍ତି ତାଙ୍କ ହସ୍ତରେ, କିନ୍ତୁ ଏ ମଧୁରଭବର ପରିଣାମ ଯେ ବଡ଼ ତିକ୍ତ ତାହା ରାଣୀଙ୍କୁ ଜଣା ନ ଥିଲା । ତାଙ୍କର ସେହି ସୁଖସୌଭାଗ୍ୟର ଅନ୍ତରାଳରେ ବିକଟ ଦୁଃଖପିଶାଚ ନର୍ତ୍ତନ କରୁଥିଲା । ରାଣୀଙ୍କ ଜନକ ରଣମଲ୍ଲ ଚଣ୍ଡଙ୍କ ବିସର୍ଜ୍ଜନରେ ଅତ୍ୟନ୍ତ ଆନନ୍ଦିତ ହୋଇ ଏକଦା କେତେକ ଜଣ ଅନୁଚରଙ୍କ ସହିତ ଚିତୋରକୁ ଆସି ଦୌହିତ୍ରଙ୍କର ଅତିଥି ହେଲେ । ଉର୍ବର ମିବାରଭୂମିରେ କିଛିଦିନ ଅବସ୍ଥାନ କରି ଏବଂ ତହିଁର ସୁପୁଷ୍ଟ ଭୋଜ୍ୟାନ୍ନରେ ପରିତୋଷ ଲାଭ କରି ଚିତୋରପ୍ରାପ୍ତିଆଶା ମନରେ ପୋଷଣ କଲେ । ଦିନେ ଦିନେ ସେ ମଧ୍ୟ ପରିହାସରେ ଦୌହିତ୍ରଙ୍କୁ ସିଂହାସନରୁ ଉଠାଇ ନିଜେ ତହିଁରେ ବସି କୌତୁକ କରୁଥିଲେ । ଏ ପରିହାସକୁ ରାଜଭୃତ୍ୟମାନେ ବହୁବାର ଦେଖିଲେ ସୁଦ୍ଧା ପରିଣାମ ଭାବିପାରୁ ନ ଥିଲେ । ଜଣେ କେବଳ ଏ ରହସ୍ୟ ବୁଝିପାରିଥିଲେ । ସେ ଚିତୋର ରାଜାଙ୍କ ବୃଦ୍ଧ ଧାତ୍ରୀ ଏବଂ ମକୁଳର ଏକାନ୍ତ ମଙ୍ଗଳାକାଂକ୍ଷିଣୀ । ରାଣୀଙ୍କର ଦୁରଭିସନ୍ଧି ବୁଝିପାରି ସେ ସର୍ବସମ୍ମୁଖରେ ପ୍ରକାଶ କରିବାକୁ ଲାଗିଲେ । ରାଣୀ ଏହା ଜାଣିପାରି ସହାୟ ଅନ୍ୱେଷଣକୁ ଯେତେବେଳେ ଚତୁର୍ଦ୍ଦିଗ ଶୂନ୍ୟ ଦେଖିଲେ । ଶିଶୁପୁତ୍ରକୁ କିପରି ଏ ବିଷମସଙ୍କଟରୁ ଉଦ୍ଧାର କରିବେ ଏହା ତାହାଙ୍କର ଚିନ୍ତାର ବିଷୟ ହେଲା । ଭୀଷଣ ଅନୁତାପ ଓ ମନସ୍ତାପରେ ହୃଦୟ ଜର୍ଜ୍ଜରିତ ହେବାକୁ ଲାଗିଲା । ଚଣ୍ଡସିଂହଙ୍କର ବିଦାୟକାଳୀନ କଥାମାନ ମନରେ ପଡ଼ି ମର୍ମସ୍ଥଳ ଆଲୋଡ଼ିତ କଲା । ଚଣ୍ଡଙ୍କର ସେହି ଆର୍ତ୍ତନିଶ୍ୱାସ ଏତେଦିନେ ପ୍ରଚଣ୍ଡ ମୂର୍ତ୍ତି ଧାରଣ କରି ରାଣୀଙ୍କର ଚତୁର୍ଦ୍ଦିଗ ଧୂମମୟ କରିଦେଲା । ସେ ଅନନ୍ୟଗତିକା ହୋଇ ସ୍ୱପୁତ୍ରର ଏକମାତ୍ର ହିତୈଷୀ ସେହି ଚଣ୍ଡଙ୍କର ସ୍ମରଣ, ଅନୁଧ୍ୟାନ ଏବଂ ଅନୁସନ୍ଧାନ କରିବାକୁ ଲାଗିଲେ । ବର୍ଣ୍ୟସ୍ଥଳରେ ଚଣ୍ଡ ରାଣୀଙ୍କର ସାହାଯ୍ୟଭିକ୍ଷାପ୍ରସ୍ତାବ ପ୍ରାପ୍ତ ହୋଇ ପିତୃରାଜଧାନୀର ଉଦ୍ଧାର ଲାଗି ପ୍ରଚଣ୍ଡବିକ୍ରମରେ ଯୁଦ୍ଧକୁ ସମୁଦ୍ୟତ ହେଲେ ଏବଂ ମକୁଳର ଅମଙ୍ଗଳ ଆଶଙ୍କାରେ ବ୍ୟାକୁଳ ହୋଇପଡ଼ି ପ୍ରଥମେ ରାଣୀଙ୍କ

ନିକଟକୁ ଗୁପ୍ତଭାବରେ ଏହି ସନ୍ଦେଶ ପ୍ରଦାନ କଲେ ଯେ, ରାଜଧାନୀରେ ମୋହର ପ୍ରବେଶ ପର୍ଯ୍ୟନ୍ତ ମଲ୍ଲିକ ସେଥିରୁ ବାହାର ଅଧି ଗ୍ରାମେ ଗ୍ରାମେ ପ୍ରଜାଙ୍କୁ ଭୋଜି ଦେବା ଛଳରେ ମୋ ଅଡ଼କୁ ଅଗ୍ରସର ହେଉଥିବ । ରାଜମାତାଙ୍କ ଆଦେଶକ୍ରମେ ମଲ୍ଲିକ କେତେକ ଜଣ ଅନୁଚରଙ୍କ ସହିତ ଗ୍ରାମକୁ ଗ୍ରାମ ଭୋଜି ଦେବାରେ ଯଥାକ୍ରମ କରି ଶେଷ ନିର୍ଦ୍ଦେଶିତ ଦିବସରେ ଭ୍ରାତାଙ୍କୁ ଅପେକ୍ଷା କରିବାକୁ ଲାଗିଲେ । କ୍ରମେ ସୂର୍ଯ୍ୟ ଅସ୍ତାଚଳଗାମୀ ହୋଇ ଘୋର ଅନ୍ଧକାରରେ ପୃଥିବୀକୁ ଆଚ୍ଛାଦନ କଲା, ତଥାପି ଚଣ୍ଡଙ୍କର ଦେଖା ନାହିଁ । ଏହିପରି ଚିନ୍ତା କରୁଥିବା ସମୟରେ ଦୂରରୁ ଅଶ୍ୱଖୁରଶବ୍ଦ ଶୁଣାଯିବା ପରେ ପରେ କେତେଜଣ ଅଶ୍ୱାରୋହୀ ସେଠାରେ ଉପସ୍ଥିତ ହୋଇ ମଲ୍ଲିକଙ୍କର ପରିଚୟ ଜିଜ୍ଞାସା କଲେ ଏବଂ ଲୋକ୍ୟ-ଉତ୍ତରରୁ ତାହାଙ୍କୁ ଚିହ୍ନିପାରି ମହାବୀର ଚଣ୍ଡ ସେହିଠାରୁ କେତେଜଣ ଅନୁଚରଙ୍କୁ ଘେନି ପ୍ରଚଣ୍ଡ ବିକ୍ରମରେ ରାତ୍ରିକାଳରେ ଧାବମାନ ହେଲେ ଏବଂ ଜଳଦଗମ୍ଭୀରସ୍ୱରରେ ଶତ୍ରୁମାନଙ୍କୁ ଆହ୍ୱାନ କରି ନିଷ୍କୋଷିତ କୃପାଣସହ ନଗର ମଧ୍ୟରେ ପ୍ରବେଶ କଲେ । ସିଂହ ଗର୍ଜନରେ ଶୃଗାଳପଲପ୍ରାୟ ରଣମଲ୍ଲଙ୍କର ଅନୁଚରମାନେ କିଏ କାହିଁ ପ୍ରାଣଭୟରେ ପଲାୟନ କଲେ । କେହି ବା ଚଣ୍ଡଙ୍କର ଖଡ୍ଗାଘାତରେ ତଦଣ୍ଡରେ ଭୂମିଶାୟୀ ହେଲେ । କ୍ଷଣକ ମଧ୍ୟରେ ଚଣ୍ଡ ରାଜପ୍ରାସାଦରେ ପ୍ରବେଶ କରି ଦୁରାତ୍ମା ରଣମଲ୍ଲର ଅନୁସନ୍ଧାନ କଲେ । ସେ ବିଶ୍ୱାସଘାତକ ପାପିଷ୍ଠର ସେତେବେଳେ ସୁଦ୍ଧା ନିଦ୍ରାଭଙ୍ଗ ହୋଇ ନ ଥିଲା । ଅଳ୍ପକ୍ଷଣପରେ ଯେ ମହାନିଦ୍ରା ଆସିବ ଏହା ତାହାର ପୂର୍ବଲକ୍ଷଣ ଯେପରି ଦେଖାଇ ଦେଉଥିଲା । ଚଣ୍ଡସିଂହ ଅନ୍ତଃକକ୍ଷରେ ପ୍ରବେଶକରି ଦେଖିଲେ ମଦ୍ୟପାୟୀ ରଣମଲ୍ଲ ନିଦ୍ରିତ ଅଛି । ଯେତେବେଳେ ପ୍ରବଳ ପ୍ରଭଞ୍ଜନପ୍ରାୟ ଘୋର ଗର୍ଜନସହ ସେ ଘରେ ପ୍ରବେଶ କଲେ, ଦୁରାତ୍ମା ସେତେବେଳେ ଚେତନା ପାଇ ଦନ୍ତ କଡ଼ମଡ଼ କରି ଉଠିବାକୁ ଚେଷ୍ଟା କଲା, ମାତ୍ର ଆଉ ଉଠିହେଲା ନାହିଁ । ଚଣ୍ଡଙ୍କର ଖଡ୍ଗାଘାତରେ ତାହାର ମୁଣ୍ଡ ଗଣ୍ଡିରୁ ବିଚ୍ଛିନ୍ନ ହୋଇ ରକ୍ତପିଣ୍ଡପରି ସେହିଠାରେ ପଡ଼ିରହିଲା । ପିତୃରାଜଧାନୀର ଉଦ୍ଧାର ହେଲା ଏବଂ ମଲ୍ଲିକ ନଗରପତି ହେଲେ ।

ଏବେ ମୁକୁନ୍ଦଦେବ ପିତୃହନ୍ତା ଚଣ୍ଡଙ୍କ ବିରୁଦ୍ଧରେ ଯୁଦ୍ଧୋଦ୍ୟୋଗ କଲେ, ମାତ୍ର ଫଳରେ ସ୍ୱରାଜ୍ୟ ହରାଇବାକୁ ବସିବାରୁ ସଙ୍ଗେ ସଙ୍ଗେ ସନ୍ଧି ସ୍ଥାପନର ପ୍ରସ୍ତାବ କରି ସ୍ୱକୃତ ଦୋଷର ଦଣ୍ଡ ସ୍ୱରୂପ ବହୁ ଅର୍ଥ ଭୂମିଆଦି ପ୍ରଦାନ କରିଥିଲେ । ମହାମତି ଚଣ୍ଡ ଆଉ ବୃଥା ରକ୍ତପାତରେ ମତି ନ ବଳାଇ ସେ ସନ୍ଧି-ପ୍ରସ୍ତାବରେ ସମ୍ମତ ହେଲେ । କ୍ରମେ ତାହାଙ୍କର ରାଜ୍ୟ ବୃଦ୍ଧିଲାଭ କଲା । ମାତ୍ର ମକୁଲ ଆଉ ଅଧିକକାଳ ପିତୃସିଂହାସନ ଅଲଙ୍କୃତ କରି ପାରିଲେ ନାହିଁ । ଯେଉଁ ତୈମୁରଙ୍କ ନାମ ଶ୍ରବଣରେ ତଦାନୀନ୍ତନ ଦୁର୍ବଳ ଦିଲ୍ଲୀସମ୍ରାଟ ରାଜଧାନୀ ତ୍ୟାଗକରି ଗୁର୍ଜରକୁ ପଳାୟନ କରିଥିଲେ, ସେହି ବିଜୟୀ ତୈମୁରଙ୍କର ବିଜୟିବାହିନୀ ଚିତୋରର ଦୁର୍ଗଦ୍ୱାରରେ ଉପସ୍ଥିତ ହେଲା । ତୈମୁରବାହିନୀର ମେଘମନ୍ଦ୍ରପ୍ରାୟ ରଣଦୁନ୍ଦୁଭିନାଦରେ ଚିତୋର କମ୍ପିତ ହେବାକୁ ଲାଗିଲା । ଯେ କେତେ ଦିନ ମକୁଲ ପ୍ରତାପ ପ୍ରଦର୍ଶନ କରିଥିଲେ ତାହା କେବଳ ଚଣ୍ଡ ସିଂହଙ୍କ ସହାୟତା ବଳରେ; ମହାବୀର ଚଣ୍ଡଙ୍କର ଅଲୋକସାମାନ୍ୟ ଆତ୍ମତ୍ୟାଗହିଁ ମକୁଲଙ୍କୁ ଚିତୋର ସିଂହାସନରେ ନୃପପଦରେ ରକ୍ଷାକରିଥିଲା ।

ଆପଣାର ପ୍ରଭାବ ପ୍ରଦର୍ଶନ କରିବାକୁ ଏ ସଂସାରରେ କିଏ ଇଚ୍ଛୁକ ନୁହେ । କିନ୍ତୁ ପୂର୍ଣ୍ଣ କ୍ଷମତା ଥାଇ ଯେ ଆତ୍ମସଂଗୋପନ ପୂର୍ବକ ନୀରବଭାବରେ କର୍ତ୍ତବ୍ୟ ସମ୍ପାଦନ କରେ ସେହି ସୁପୁରୁଷ ଧନ୍ୟ । ବିକାରର କାରଣ ଥାଇ ସୁଦ୍ଧା ଯେ ନିର୍ବିକାରଭାବରେ ରହିପାରେ ସେହି ଏକା ଧୀରପଦବାଚ୍ୟ । ମହାମତି ଚଣ୍ଡ ଏହି ଶ୍ରେଣୀର ଲୋକ ଥିଲେ । ସେ ସ୍ୱତୋଭାବରେ ସ୍ୱାର୍ଥ ତ୍ୟାଗ କରି ନ ଥିଲେ ଚିତୋରରେ କିପରି ହତ୍ୟାର ବାତ୍ୟା ବହିଥାନ୍ତା ଏବଂ ମିବାରଭୂମି କିପରି ଅମଙ୍ଗଳ-ବନ୍ୟାରେ ପ୍ଲାବିତ ହୋଇଥାନ୍ତା ତାହା ସହଜରେ ଅନୁମେୟ । ଚଣ୍ଡସିଂହ ଏହି ଅସାଧାରଣ ପିତୃଭକ୍ତି, ତ୍ୟାଗଶୀଳତା ଏବଂ ଅକପଟଭାବ ଯୋଗୁଁ ଚିରସ୍ମରଣୀୟ ହୋଇଅଛନ୍ତି ।

---

# ଶୋଭାରାଣୀ ।

(ବଙ୍ଗଳାରୁ)

କି ସ୍ଥଳେ ସଲିଳେ          କି ବଲେ ଶଇଳେ
କାନ୍ତାରେ ପ୍ରାନ୍ତରେ ବନେ,
କିବା ତରୁକୁଞ୍ଜେ          ନଭେ ତାରାପୁଞ୍ଜେ
ବାସବକୋଦଣ୍ଡେ ଘନେ ।
ପଲ୍ଲବେ ପ୍ରସୂନେ          ଲତା ଗୁଳ୍ମେ ତୃଣେ
ତରୁଷଣ୍ଡେ ନବାଙ୍କୁରେ,
କୁମୁଦନାଥବେ          ପଦ୍ମୀବାନ୍ଧବେ
ସୌଦାମିନୀ ପ୍ରଭାପୂରେ ।
ଅସାରେ କାସାରେ          କୁନ୍ଦ କେବଦାରେ
ଇନ୍ଦୀବରେ ତାମରସେ,
ମୋ ବାସ ପଲ୍ଲଣେ          ଉଷାର ଅଙ୍କଣେ
ସ୍ୱାପ୍ନନ୍ତ୍ର ଘନୋରସେ ।
ବକୁଳେ କେତକେ          ଚମ୍ପା କୁରୁବକେ
କଥାଳୀ ଶେଫାଳୀକୁଳେ,
ବିଶାଳ ଶୈକତେ          ଶୈଳାରଣ୍ୟଗତେ
ହ୍ରଦନଦୀ ସିନ୍ଧୁକୂଳେ ।
ବାଳକବଦନେ          ନାରୀ ଅପଘନେ
ଯୁବକ ଯୁବତୀ ମେଳେ,
ହେମନ୍ତେ ବସନ୍ତେ          ପ୍ରାବୃଟେ ଶରତେ
ନାନାରୂପ ଧରି ଖେଳେ ।
ମୁହିଁ ବର୍ଣ୍ଣନ —          ଚରଣ-ସରୋଜ-
ଚର୍ଚ୍ଚିତା ଶୋଭାରାଣୀ,
ମୋତେ ଅନୁସରି          ବର୍ଣ୍ଣ କରନାରି
ପାରନ୍ତି ତାହାଙ୍କୁ ଜାଣି ।

# ବାନର ।

ବାନର ସ୍ତନ୍ୟପାୟୀ ଜନ୍ତୁ ମଧ୍ୟରେ ପରିଗଣିତ । ଏମାନେ ସାଧାରଣତଃ ଗ୍ରୀଷ୍ମପ୍ରଧାନ ଦେଶରେ ବାସକରନ୍ତି । ଭାରତରେ କ୍ଷୁଦ୍ର ବୃହତ ଅନେକଜାତୀୟ ବାନର ଦେଖାଯାନ୍ତି । ସେମାନଙ୍କ ମଧ୍ୟରୁ ଅଧିକାଂଶ ବନ୍ୟଜନ୍ତୁ ମଧ୍ୟରେ ଗଣ୍ୟ । ବାନରଠାରେ ମନୁଷ୍ୟର ସାଦୃଶ୍ୟ ଯେଉଁପରିମାଣରେ ଲକ୍ଷିତ ହୁଏ ଅନ୍ୟ କୌଣସି ପ୍ରାଣୀଠାରେ ଲକ୍ଷିତ ହୁଏ ନାହିଁ । ମଧ୍ୟ-ଅଫ୍ରିକାରେ ଗରିଲା ଏବ ଶିମ୍ପାଞ୍ଜି ନାମକ ଏବ ସୁମାତ୍ରା ଓ ମାଲଦ୍ୱୀପରେ ଓରାଙ୍ଗଉଟାଙ୍ଗ୍ ନାମକ ଯେଉଁ ଲାଙ୍ଗୁଳହୀନ ବାନର ଅଛନ୍ତି ସେମାନେ ଆକୃତିରେ ମନୁଷ୍ୟର ଏତେ ନିକଟବର୍ତ୍ତୀ ଯେ ସେମାନଙ୍କଠାରେ ବନ୍ୟମନୁଷ୍ୟର ଭ୍ରମ ହୁଏ ।

ବାନରର ଚାରିଗୋଟି ପାଦ ଅଛି ଏବ ପ୍ରତ୍ୟେକ ପାଦ ହସ୍ତର କାର୍ଯ୍ୟ କରେ, ତେଣୁ ତାହାକୁ ଚତୁର୍ହସ୍ତ ପ୍ରାଣୀ ବୋଲାଯାଏ । ପ୍ରାୟ ସକଳଜାତୀୟ ବାନର ଅତି ଚତୁର ଓ ଅନୁକରଣପଟୁ, କିନ୍ତୁ ବଡ଼ ଧୂର୍ତ୍ତ ଏବ ଅନିଷ୍ଟକାରୀ । ମର୍କଟମାନେ ବୃକ୍ଷ ଉପରେ ବାସ କରିବାକୁ ଭଲପାନ୍ତି । ଅନ୍ୟାନ୍ୟ ପ୍ରାଣୀମାନେ ଭୂପୃଷ୍ଠରେ ଯେପରି ଅକ୍ଳେଶରେ ଭ୍ରମଣ କରିପାରନ୍ତି, ମର୍କଟମାନେ ବୃକ୍ଷଶାଖାରେ ସେହିପରି ଅବଲୀଳାକ୍ରମେ ବିଚରଣ କରିପାରନ୍ତି ; ତେଣୁ ସେମାନଙ୍କୁ ଶାଖାମୃଗ କୁହାଯାଏ ।

ହନୁମାନ୍—ଭାରତବର୍ଷର ପ୍ରାୟ ସକଳ ସ୍ଥାନରେ ହନୁମାନ ଦେଖାଯାନ୍ତି । ଏମାନେ ଭାରତୀୟ ବାନରଜାତି ମଧ୍ୟରେ ଦୀର୍ଘକାୟ । ଲାଙ୍ଗୁଳ ମୂଳଠାରୁ ମୁଣ୍ଡ ପର୍ଯ୍ୟନ୍ତ ପ୍ରାୟ ଅଢ଼େଇଫୁଟ ଏବ ଲାଙ୍ଗୁଳଟା ପ୍ରାୟ ଚାରିଫୁଟ ହେବ । ଏମାନଙ୍କ ହସ୍ତର ପାପୁଲି, ପାଦର ତଳିପା ଏବ ବଦନ କୃଷ୍ଣବର୍ଣ୍ଣ । ଏମାନଙ୍କ କପୋଳର ଊର୍ଦ୍ଧ୍ୱଭାଗରେ ଦୁଇଗୋଟି ଲେଖାଏଁ ପ୍ରଶସ୍ତ ହନୁ ଥାଏ । ତେଣୁ ଏମାନଙ୍କୁ ହନୁମାନ୍ କୁହାଯାଏ । ଏମାନେ ଫଳ, ମୂଳ, ଲତା, ପତ୍ର ଖାଇ ପ୍ରାଣଧାରଣ କରନ୍ତି, ତେଣୁ ଏମାନେ ଜଙ୍ଗଲରେ ବାସ କରନ୍ତି । କିନ୍ତୁ ଅନେକ ସମୟରେ ଗ୍ରାମ ଏବ ନଗର ମଧ୍ୟକୁ ପ୍ରବେଶ କରି ବହୁଘରରେ

ରକ୍ଷିତ ସୁନ୍ଦର ସୁନ୍ଦର ଉଦ୍ୟାନମାନଙ୍କର ବୃକ୍ଷକୁ ଭଗ୍ନକରି ଫଳ, ମୂଳ, ଡାଳ, ପତ୍ର ପ୍ରଭୃତି ଭକ୍ଷଣ କରି ବିଶେଷ ଅନିଷ୍ଟ ସାଧନ କରନ୍ତି ।

ହନୁମାନମାନେ ଦଳବଦ୍ଧ ହୋଇ ବାସକରନ୍ତି । ପ୍ରତ୍ୟେକ ଦଳରେ ଗୋଟିଏ ପରାକ୍ରମଶାଳୀ ପୁରୁଷ ହନୁମାନ୍ ଥାଏ । ସେ ଏତେ ଈର୍ଷାପରାୟଣ ଯେ ଅନ୍ୟ କୌଣସି ପୁରୁଷ ହନୁମାନକୁ ଦଳମଧ୍ୟରେ ପ୍ରବେଶ କରାଇ ଦିଏ ନାହିଁ । ଦଳମଧ୍ୟରେ ପୁଂହନୁମାନ୍ ଜନ୍ମିଲେ ଦଳପତି ତାକୁ ନିଷ୍ଠୁରଭାବରେ ବଧକରେ । ଏହି ଦଳପତି ଉତ୍ପାତରେ ଦଳସ୍ଥିତ ଗର୍ଭବତୀ ହନୁମତୀ ଅନ୍ୟତ୍ର ଲୁଚି ଛୁଆ ପ୍ରସବ କରେ । ଯଦି ଛୁଆଟି ସ୍ତ୍ରୀ ହନୁମାନ୍ ହୋଇଯାଏ ତାହାହେଲେ ଛୁଆକୁ ଧରି ପୁଣି ଦଳକୁ ଫେରିଆସେ, କିନ୍ତୁ ପୁଂହନୁମାନ ହୋଇଥିଲେ ଛୁଆକୁ ଧରି ଲୁକ୍କାୟିତଭାବରେ ଛୁଆଟି ବୟଃପ୍ରାପ୍ତ ହେବା ପର୍ଯ୍ୟନ୍ତ ଇତସ୍ତତଃ ବୁଲୁଥାଏ । ତତ୍ପରେ ଛୁଆକୁ ଧରି ପୁଣି ଦଳରେ ଆସି ମିଶେ ।

ପୁରୁଷ ହନୁମାନ ବୃକ୍ଷରୁ ବୃକ୍ଷାନ୍ତରକୁ କିମ୍ବା ଶାଖାରୁ ଶାଖାନ୍ତରକୁ ଡେଇଁଲାବେଳେ ବଡ଼ ଗମ୍ଭୀର ହୁଙ୍କାରଶବ୍ଦ କରେ ଏବଂ କୋପାନ୍ୱିତ ହେଲାବେଳେ ଏକପ୍ରକାର ଭୟଙ୍କର ଦନ୍ତକଡ଼ମଡ଼ଶବ୍ଦ କରେ । ସେ ସମୟରେ ହନୁମାନ୍ ବଡ଼ ଉଗ୍ରମୂର୍ତ୍ତି ଧାରଣ କରିଥାଏ ।

କପି—କପି ବା ପାଠକାଣ୍ଡିଆ ମର୍କଟ ପୁରୀ, ମଥୁରା ପ୍ରଭୃତି ତୀର୍ଥସ୍ଥାନମାନଙ୍କରେ ବହୁଳଭାବରେ ଦୃଷ୍ଟ ହୁଅନ୍ତି । ଏମାନେ ଅପେକ୍ଷାକୃତ କ୍ଷୁଦ୍ରକାୟ । ଏମାନଙ୍କର ଲାଙ୍ଗୁଳ ହନୁମାନର ଲାଙ୍ଗୁଳ ତୁଳନାରେ ଅତିଶୟ କ୍ଷୁଦ୍ର । ଏମାନେ ବଡ଼ ହିଂସ୍ରବୁଦ୍ଧି ଏବଂ ଅନିଷ୍ଟକାରୀ । ହନୁମାନପରି ଏମାନେ କେତେକ ପରିମାଣରେ ଫଳ, ମୂଳ, ପତ୍ର ଖାଇ ଜୀବନ ଧାରଣ କରନ୍ତି ସତ୍ୟ, କିନ୍ତୁ ମନୁଷ୍ୟର ଖାଦ୍ୟପଦାର୍ଥରେ ଏମାନଙ୍କର ଅପେକ୍ଷାକୃତ ବିଶେଷ ଅଭିରୁଚି । ଏମାନେ ଗୃହରେ ପ୍ରବେଶ କରି ଅନ୍ନ, ଚାଉଳ, ମିଷ୍ଟାନ୍ନ ପ୍ରଭୃତି ଯାହାକିଛି ଖାଦ୍ୟପଦାର୍ଥ ପାଆନ୍ତି ନେଇ ପଳାୟନ କରନ୍ତି । ଏମାନଙ୍କ ଗଣ୍ଡଦେଶରେ ଏକପ୍ରକାର ଥଳୀ ଥାଏ ଏବଂ ଅପହୃତ ଖାଦ୍ୟପଦାର୍ଥ ଶୀଘ୍ର ଶୀଘ୍ର ଏହି ଥଳୀ ମଧ୍ୟରେ ରଖିଦିଅନ୍ତି । ତେଣୁ ଅନେକ ସମୟରେ ଏମାନଙ୍କର ଗଣ୍ଡଦେଶ ଅତି ସ୍ଥୂଳ

ଦେଖାଯାଏ । କଣ୍ଟିନ୍ତୁ ହେଲାବେଳେ ସେହି ଥଳୀରୁ ଖାଦ୍ୟପଦାର୍ଥ ବାହାର କରି ଚର୍ବଣ ପୂର୍ବକ ଭକ୍ଷଣ କରନ୍ତି ।

ପୁରୀରେ ମାଙ୍କଡମାନଙ୍କର ଅତ୍ୟାଚାର ଖୁବ୍ ବେଶୀ । ଏମାନଙ୍କ ଅତ୍ୟାଚାରରେ କୌଣସି ଲୋକ ଖାଦ୍ୟସାମଗ୍ରୀ ଧରି ନିରାପଦରେ ଗୃହକୁ ବାହାରିଯିବା ସହଜ ନୁହେଁ । ମାଙ୍କଡମାନଙ୍କ ମଧ୍ୟରେ ଏକତା ଅଛି । କୌଣସି ମାଙ୍କଡକୁ ବିପଦରେ ପଡିବାର ଦେଖିଲେ ଶତ ଶତ ମାଙ୍କଡ ଭୟଙ୍କରବେଗରେ ଚତୁର୍ଦ୍ଦିଗରୁ ଆସି ତାକୁ ଉଦ୍ଧାର କରନ୍ତି; ତେଣୁ ଲୋକେ ମାଙ୍କଡକୁ ଭୟ କରନ୍ତି । ଏମାନେ ହନୁମାନ ଅପେକ୍ଷା ବେଶୀ ଅନୁକରଣପଟୁ । ଏମାନେ ଶିଶୁମାନଙ୍କ ପରି ମନୁଷ୍ୟର କାର୍ଯ୍ୟକଳାପ ଅନୁକରଣ କରିବାକୁ ଚେଷ୍ଟାକରନ୍ତି ।

ଲୋକେ ହନୁମାନଙ୍କୁ ରାମଚନ୍ଦ୍ରଙ୍କ ଦୂତ ମହାବୀର ହନୁମାନଙ୍କର ବଂଶଧର ଏବଂ ମାଙ୍କଡକୁ ରାମଚନ୍ଦ୍ରଙ୍କ ଭକ୍ତ ସୁଗ୍ରୀବଙ୍କର ବଂଶଧର ବୋଲି ବିଶ୍ୱାସ କରି ସେମାନଙ୍କୁ ବଧ କରନ୍ତି ନାହିଁ । ତେଣୁ ସେମାନଙ୍କର ସଂଖ୍ୟା ଏବଂ ଅତ୍ୟାଚାର ଦିନକୁଦିନ ବଢୁଅଛି ।

ମାଙ୍କଡ ସହଜରେ ପୋଷା ମାନେ । ଲୋକେ ମାଙ୍କଡ ପୋଷି ଏବଂ ତାକୁ ନାନାପ୍ରକାର କ୍ରୀଡା କୌତୁକ ଶିକ୍ଷାଦେଇ ତାହା ସାହାଯ୍ୟରେ ଅର୍ଥ ଉପାର୍ଜ୍ଜନ କରନ୍ତି ।

---

## ପ୍ରତାପରୁଦ୍ର ଦେବ ।

(୧)

ବହୁଗୁଣାକାର ଉତ୍କଳ ଭୂପବର
ପ୍ରତାପୀ ନୃପପୁଙ୍ଗବ,
ହେ ପ୍ରତାପରୁଦ୍ର ! ବଢାଇଛ କ୍ଷୁଦ୍ର-
ଜାତିର ଗୁଣ ଗୌରବ ।

(୨)

କର୍ଣ୍ଣଧାର ତୁଲେ ଶୃଙ୍ଖଳ କୌଶଳେ
ଗଙ୍ଗାଠାରୁ ଗୋଦାବରୀ—
ଯାଏ ପ୍ରସାରିତ ଜନତାପୂରିତ
ଉତ୍କଳ-ଧରଣୀ-ତରୀ ।

(୩)

ପ୍ରେମିକ ଚୈତନ୍ୟ- ପ୍ରେମେ ହୋଇ ଧନ୍ୟ
ପୁଣି ନିଜ ଶଙ୍କୁଜନେ,
ତୋଷାଇ ସେ ସୁଧା ନିବାରିଲ କ୍ଷୁଧା
ମୁଗ୍ଧ ତୁମ୍ଭେ ପ୍ରେମ-ଧନେ ।

(୪)

ତବ ରାଜ ସଭା ଥିଲା କି ସୁ-ପ୍ରଭା
ନାନା ଶାସ୍ତ୍ରଭାଷାଦକ୍ଷ,
ସାର୍ବଭୌମବତ ଦଗ୍ଧଳ ପଣ୍ଡିତ
ମଣ୍ଡୁଥିଲେ ଯାର ବକ୍ଷ ।

(୫)

ତୁମ୍ଭର ସୁକୃତେ ଦେଖାଦେଲେ କେତେ
ଅଳଙ୍କାର-ଉତ୍କଳ ନଭେ,
ଭକ୍ତ କବ ଜ୍ଞାନୀ ପଣ୍ଡିତ ବଜାଣୀ
ନକ୍ଷତ୍ର ପଣ୍ଡିଏ ସର୍ବେ ।

(୬)

ତହିଁରେ ଚନ୍ଦ୍ରମା- ସମାନେ ସୁଷମା
ବଢାଇଣ ଭକ୍ତଦାସ,
ସର୍ବଜନ ହୃଦେ ଭକ୍ତି-ସୁଧାଗୀତେ
ସିଞ୍ଚି ପ୍ରକାଇଲେ ଅଣ ।

(୭)

ଦକ୍ଷିଣେ କର୍ଣ୍ଣାଟ୍ୟେ ଦମି ଉପୁଚର୍ଯ୍ୟେ
ହେଲ ଏକଚ୍ଛତ୍ରୀ ଯେବେ,
ଅହୋ କି ଉତ୍କଳ ଥିଲା ଏ ଉତ୍କଳ-
ମୁଖ ଗଜପତି ତେବେ !

(୮)

ଗୌଡ଼େଶ୍ୱରନାମେ ଯେବେ ଧାମେ ଧାମେ
ଉଡ଼ୁଥିଲା ବୈଜୟନ୍ତୀ,
ଉତ୍କଳ କର୍ଣ୍ଣାଟ— ପତି ବୋଲି ଥାଟ
ଭଟ୍ଟି ଠେକୁଥିଲେ ଛତ୍ର ।

(୯)

ସେକାଳ ମହିମା ସେକାଳ ଗରିମା
ଅହୋ କାହିଁଗଲା ଚଳି !
ଏବେ ସବୁ ସରି କଡ଼ ପିଞ୍ଜ ପରି
ଉତ୍କଳ ପଡ଼ିଛି ଖାଲି ।

---

## ଯୁଧିଷ୍ଠିରଙ୍କ ସ୍ୱର୍ଗପ୍ରୟାଣ ।

ଦିଲ୍ଲୀନିକଟବର୍ତ୍ତୀ କୁରୁକ୍ଷେତ୍ରନାମକ ସ୍ଥାନରେ କୁରୁପାଣ୍ଡବମାନଙ୍କର ଯେଉଁ ମହାସମର ହୋଇଥିଲା ସେଥିରେ ଭାରତ ଏକପ୍ରକାର ବୀରଶୂନ୍ୟ ହୋଇଅଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ଯୁଦ୍ଧରେ ଅଭିମାନୀ, କପଟାଚାରୀ କୌରବଗଣ, ଭୀଷ୍ମଦ୍ରୋଣପ୍ରମୁଖ ମହାରଥୀ ଏବଂ ଦ୍ରୁପଦ, ବିରାଟ ପ୍ରଭୃତି ବହିର୍ଦେଶୀୟ ନୃପତିବୃନ୍ଦ ଚତୁରଙ୍ଗସେନା ସହିତ ନିହତ ହୋଇଥିଲେ । କେବଳ ଧର୍ମଶୀଳ ପାଣ୍ଡବମାନେ ଦ୍ୱାରକାଧିପତି ଶ୍ରୀକୃଷ୍ଣଙ୍କ ମନ୍ତ୍ରଣାବଳରେ ଜୟଲାଭ କରି ଜୀବିତ ରହିଲେ । ପାଣ୍ଡବାଗ୍ରଣୀ ଯୁଧିଷ୍ଠିର ବିଶାଳ ସାମ୍ରାଜ୍ୟର

ଅଧୀଶ୍ୱର ହୋଇ ସୁଦ୍ଧା ସର୍ବଦା ବିଷାଦସାଗରରେ ନିମଗ୍ନ ହେଲେ । ବନ୍ଧୁ ବାନ୍ଧବ ଓ ଆତ୍ମୀୟ ସ୍ୱଜନଙ୍କୁ ହତ୍ୟାକରି ଯେଉଁ ରାଜସୁଖ ଅର୍ଜନ କରିଥିଲେ ତାହା ବିଷବତ୍ ବୋଧ ହେଉଥିଲା । ପଶ୍ଚାତ୍ ବିପଦବନ୍ଧୁ ଶ୍ରୀକୃଷ୍ଣଙ୍କର ମୃତ୍ୟୁ-ସଂବାଦ ପାଇ ସଂସାରସୁଖରୁ ଏକପ୍ରକାର ବିରତ ହେଲେ । ତଦନନ୍ତର ଅଭିମନ୍ୟୁତନୟ ପରୀକ୍ଷିତଙ୍କ ଉପରେ ରାଜ୍ୟଭାର ଅର୍ପଣ କରି ଦ୍ରୌପଦୀ ଏବଂ ଭ୍ରାତାମାନଙ୍କ ସହ ତପସ୍ୟାର୍ଥ ହିମାଳୟକୁ ପ୍ରସ୍ଥାନ କଲେ । ଏହି ମହାପ୍ରସ୍ଥାନ କାଳରେ ପ୍ରଭୁଭକ୍ତ କୁକୁରଟିଏ ଏମାନଙ୍କର ଅନୁଗମନ କରିଥିଲା ।

ତୁଷାରମଣ୍ଡିତ ହିମାଳୟ ଉପରେ ଆରୋହଣ କଲାବେଳେ ପ୍ରଥମେ ଦ୍ରୌପଦୀ, ତତ୍ପରେ ଭୀମ, ଅର୍ଜୁନ, ନକୁଳ ଓ ସହଦେବ ଭୂତଳରେ ପତିତ ହୋଇ ପ୍ରାଣତ୍ୟାଗ କଲେ । ଧୀରସ୍ୱଭାବ ଯୁଧିଷ୍ଠିର ଏପରି ଶୋଚନୀୟ ଘଟଣାରେ ବିଚଳିତ ନ ହୋଇ ତାହାର ପ୍ରକୃତ ତଥ୍ୟ ଚନ୍ତାକରି ସିଦ୍ଧାନ୍ତ କଲେ ଯେ ପାପହିଁ ଦୁଃଖର କାରଣ—ଦ୍ରୁପଦରାଜନନ୍ଦିନୀ ପଞ୍ଚପାଣ୍ଡବଙ୍କ ପତ୍ନୀ ହୋଇ କେବଳ ମଧ୍ୟମପାଣ୍ଡବଙ୍କୁ ଅଧିକ ଆଦର କରୁଥିଲେ ; ଭୀମପରାକ୍ରମ ଭୀମସେନ ଅନ୍ୟର ଉଦରଜ୍ୱାଳା ନ ବୁଝି କେବଳ ନିଜ ଉଦରପୂର୍ତ୍ତି ନିମନ୍ତେ ସମସ୍ତ ଭକ୍ଷ୍ୟଦ୍ରବ୍ୟ ଉଦରସାତ୍ କରୁଥିଲେ ଏବଂ ନିଜେ ମହାବଳଶାଳୀ ବୋଲି ଅହଂକାର କରୁଥିଲେ ; ଧନୁର୍ଦ୍ଧର ଅର୍ଜୁନ ଶୌର୍ଯ୍ୟାଭିମାନୀ ହୋଇ ପ୍ରତିଜ୍ଞା କରିଥିଲେ "ଦିନକ ମଧ୍ୟରେ ସମସ୍ତ ଶତ୍ରୁ ବିନାଶ କରିପାରେଁ"; ଧର୍ମନିଷ୍ଠ ନକୁଳ ନିଜକୁ ରୂପଲାବଣ୍ୟସମ୍ପନ୍ନ ଏବଂ ଭ୍ରାତୃଭକ୍ତ ସହଦେବ ନିଜକୁ ଶାସ୍ତ୍ରଜ୍ଞ ବୋଲି ଅଭିମାନ କରୁଥିଲେ । ଏହି ଅହଂକାର ସେମାନଙ୍କର ପତନର କାରଣ ।

ତତ୍ପରେ ଧର୍ମପୁତ୍ର ଯୁଧିଷ୍ଠିର ଅନନ୍ୟୋପାୟ ହୋଇ ଉନ୍ନତ ଗିରି-ଶିଖରକୁ ଆରୋହଣ କରୁଥିବାବେଳେ, ଏମନ୍ତ ସମୟରେ ଦେବରାଜ ଇନ୍ଦ୍ର ସ୍ୱର୍ଗରୁ ଅବତରଣକରି ଯୁଧିଷ୍ଠିରଙ୍କୁ ସମ୍ବୋଧନକରି କହିଲେ "ହେ ମହାରାଜ ! ଆପଣ ଏହି ଦିବ୍ୟରଥରେ ଆରୋହଣ କରି ସ୍ୱର୍ଗକୁ ଆଗମନ କରନ୍ତୁ ।"

ଧର୍ମରାଜ ତାହା ଶୁଣି ଭକ୍ତିଗଦ୍‌ଗଦସ୍ୱରରେ କହିଲେ "ହେ ପ୍ରଭୋ ! ଆପଣଙ୍କର ଅଦ୍ଭୁତ ବଚନ ମୋହର ହୃଦୟରେ ହର୍ଷ ଓ ଶୋକ ଉଭୟ ଉପସ୍ଥାପିତ କରୁଅଛି । ଏହି ପାପତାପମୟ ସଂସାର ପରିତ୍ୟାଗ କରି ସୁଖଶାନ୍ତିମୟ ଅମରପୁରକୁ ଯିବା ଅବଶ୍ୟ ସୌଭାଗ୍ୟର ବିଷୟ, କିନ୍ତୁ ମୋର ପ୍ରିୟତମା ସୁକୁମାରୀ ଦ୍ରୌପଦୀ ଓ ପ୍ରାଣସମ ଭ୍ରାତାମାନଙ୍କୁ ଧରାତଳରେ ତ୍ୟାଗକରି କିପରି ସେଠାକୁ ଗମନ କରିବି ?"

ଏହା ଶୁଣି ଦେବରାଜ କହିଲେ "ଧର୍ମରାଜ ! ଆପଣଙ୍କର ସୁଖସମ୍ବର୍ଦ୍ଧିତା ଦ୍ରୌପଦୀ ଓ ପ୍ରାଣପ୍ରତିମ ଭ୍ରାତାମାନେ ନଶ୍ୱର ଶରୀର ତ୍ୟାଗକରି ସ୍ୱର୍ଗଗମନ କରିଅଛନ୍ତି । ଆପଣ ସଶରୀରରେ ସ୍ୱର୍ଗାରୋହଣ କରନ୍ତୁ, ଦେବଲୋକରେ ସେମାନଙ୍କ ସହିତ ସାକ୍ଷାତ୍‌କାର ହେବ ।" ମହାପୁରୁଷମାନଙ୍କର ସର୍ବଜୀବରେ ସମାନ ଦୃଷ୍ଟି । ସେମାନଙ୍କର ପ୍ରାଣ ଶୋକସନ୍ତପ୍ତ ହୃଦୟରେ ଅମୃତଧାରା ବର୍ଷଣ କରେ । ତେଣୁ ଯୁଧିଷ୍ଠିର ଦେବରାଜଙ୍କୁ ପ୍ରଶ୍ନ କଲେ "ସୁରପତେ ! ଏହି ନିରୀହ ପ୍ରଭୁଭକ୍ତ ଶ୍ୱାନଟି ବହୁକାଳରୁ ମୋତେ ଅନୁସରଣ କରିଅଛି, ଏ ମୋ ସଙ୍ଗରେ ସ୍ୱର୍ଗଗମନ କରି ପାରିବ ତ ?" ଇନ୍ଦ୍ର ଉତ୍ତର କଲେ "ଏହା ଅତି ଅସୁନ୍ଦର କଥା, ସୁରଲୋକରେ ଏଭଳି ଦୂଷିତ ଅପବିତ୍ର ପ୍ରାଣୀର ଅବସ୍ଥାନ କଦାପି ଶୋଭନୀୟ ନୁହେ । ଆପଣ ଅପୂର୍ବ ପୁଣ୍ୟବଳରେ ସ୍ୱର୍ଗର ଅଧିକାରୀ ହୋଇଅଛନ୍ତି । ଏହାର ସେପରି କି ପୁଣ୍ୟବଳ ଅଛି ଯେ ଆପଣଙ୍କ ସହିତ ସ୍ୱର୍ଗକୁ ଯିବ ?" ଏହା ଶୁଣି ଯୁଧିଷ୍ଠିର କହିଲେ "ଦେବେନ୍ଦ୍ର ! ଏହି ଶ୍ୱାନଟି ମୋର ପରମ ଭକ୍ତ । ଭକ୍ତ ଶରଣାଗତ ପ୍ରାଣୀ ପ୍ରତି ନିଷ୍ଠୁର ବ୍ୟବହାର ଦେଖାଇ ଯେ କେବଳ ଆତ୍ମସୁଖରେ ସୁଖୀ ହୁଏ ତାହାପରି ନରାଧମ ଜଗତରେ କେହି ନାହିଁ । ଅତଏବ ଏହି ଶ୍ୱାନ ମୋର ସହଗାମୀ ନ ହେଲେ ମୁଁ ଏକାକୀ ସ୍ୱର୍ଗାରୋହଣ କରି ନ ପାରେଁ ।" ତତ୍ପରେ ଇନ୍ଦ୍ର କହିଲେ "ଧର୍ମରାଜ ! ତେବେ ଆପଣ କି ପ୍ରିୟଜନାସଙ୍ଗଲିପ୍ସା ପରିତ୍ୟାଗକରି ଏହି ଶ୍ୱାନସହିତ ମର୍ତ୍ତ୍ୟପୁରରେ ବାସକରିବାକୁ ଇଚ୍ଛା କରନ୍ତି ?" ଯୁଧିଷ୍ଠିର ଇନ୍ଦ୍ରଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଉଅଛନ୍ତି ଏମନ୍ତ ସମୟରେ ସେହି ଶ୍ୱାନ ଛଦ୍ମବେଶବର୍ଜନପୂର୍ବକ ସାକ୍ଷାତ୍

ଧର୍ମରୂପ ଧାରଣ କରି ପୁତ୍ରଙ୍କୁ ହର୍ଷମଧୁରସ୍ୱରରେ କହିବାକୁ ଲାଗିଲେ "ବତ୍ସ! ତୁମ୍ଭର ହୃଦୟ ପରୀକ୍ଷା ନିମନ୍ତେ ମୁଁ ଶ୍ୱାନବେଶରେ ତୁମ୍ଭର ଅନୁଗାମୀ ହୋଇଥିଲି; ବର୍ତ୍ତମାନ ଦେଖିଲି ତୁମ୍ଭେ ସଦାଚାରୀ, ନିଷ୍ପାପ, ବ୍ରହ୍ମଜ୍ଞାନୀ ଓ ସର୍ବଭୂତେ ଦୟାଶୀଳ । ବର୍ତ୍ତମାନ ଅମରଲୋକବାସୀ ହୋଇ ଅକ୍ଷୟ ସୁଖ-ଶାନ୍ତି ଭୋଗ କର । ଉପରେ ଯୁଧିଷ୍ଠିର ଇନ୍ଦ୍ରାଦି ଦେବତା ଓ ନାରଦାଦି ଦେବର୍ଷିମାନଙ୍କ ଦ୍ୱାରା ପରିବୃତ ହୋଇ ସୁରଵିମାନରେ ଦିବ୍ୟଲୋକକୁ ପ୍ରସ୍ଥାନ କଲେ ।

ଧର୍ମାତ୍ମା ଯୁଧିଷ୍ଠିର ସ୍ୱର୍ଗରେ ଉପସ୍ଥିତ ହୋଇ ଦେଖିଲେ ତାହାଙ୍କର ପରମ ଶତ୍ରୁ ଦୁର୍ଯ୍ୟୋଧନ ଦେବଗଣଙ୍କ ମଧ୍ୟରେ ସମାସୀନ ଅଛନ୍ତି । ସୁତରାଂ ସେ କୋପଗମ୍ଭୀରସ୍ୱରରେ କହିବାକୁ ଲାଗିଲେ "ସୁରଗଣ! ଏ କି ଆଶ୍ଚର୍ଯ୍ୟ! ଯେ ଦୁରାତ୍ମା ସ୍ୱାର୍ଥାନ୍ଧ ହୋଇ ଅନ୍ୟାୟ ଯୁଦ୍ଧରେ ସ୍ୱବଂଶର ଉଚ୍ଛେଦ ସାଧନ କରିଅଛି, ଯେ ନରାଧମ ଅନ୍ତଃପୁରବାସିନୀ ଯାଜ୍ଞସେନୀଙ୍କୁ କେଶାକର୍ଷଣପୂର୍ବକ ସଭାସ୍ଥଳକୁ ଆଣି ଗୁରୁଜନସମାଜରେ ଅପମାନିତ କରିଅଛି, ଯେଉଁ ପାପିଷ୍ଠର ସ୍ୱାର୍ଥସାଧନଯଜ୍ଞରେ ସହସ୍ର ନିର୍ଦ୍ଦୋଷ ରାଜପୁରୁଷ ଯୁଗପତ୍ ଆତ୍ମବଳି ପ୍ରଦାନ କରିଅଛନ୍ତି, ସେ କିପରି ସ୍ୱର୍ଗରେ ଆସନ ପାଇଲା? ଅତଏବ ଏହି ସ୍ଥାନରେ ବାସ କରିବା ମୋର ଅଭିଳାଷ ନୁହେଁ, ଯେଉଁଠାରେ ମୋର ଭ୍ରାତାମାନେ ଏବଂ ଦ୍ରୌପଦୀ ଅଛନ୍ତି ସେହି ସ୍ଥାନକୁ ମୋତେ ବିଦାୟ ଦିଅନ୍ତୁ ।"

ଦେବର୍ଷି ନାରଦ ଯୁଧିଷ୍ଠିରଙ୍କର ବାକ୍ୟ ଶୁଣି ଉତ୍ତର କଲେ "ଧର୍ମ-ନନ୍ଦନ! ଏ ସ୍ୱର୍ଗଲୋକ । ଏ ସ୍ଥାନରେ ଅସୂୟାପ୍ରଣୋଦିତ ବୈରଭାବ ଅବଶ୍ୟ ସୁନ୍ଦର ନୁହେଁ । ଦୁର୍ଯ୍ୟୋଧନ ସମରାଙ୍ଗନରେ କ୍ଷାତ୍ରଧର୍ମାନୁମୋଦିତ ସାହସ ଦେଖାଇଅଛନ୍ତି, ଏବଂ ପୃଷ୍ଠଭଙ୍ଗ ନ ଦେଇ ସେହି ରଣସ୍ଥଳରେ ପ୍ରାଣ ବିସର୍ଜନ କରିଅଛନ୍ତି; ତେଣୁ ସେ ସ୍ୱର୍ଗର ଅଧିକାରୀ ଅଟନ୍ତି । ଅତଏବ ପାର୍ଥିବ ସଂକୀ-ର୍ଣ୍ଣତା ତ୍ୟାଗକରି ଦେବଭାବରେ ଏହାଙ୍କୁ ଗ୍ରହଣକଲେ ଭବାଦୃଶ ପୁଣ୍ୟାତ୍ମା-ମାନଙ୍କ ଉନ୍ନତ ଚରିତ୍ରର ଉପଯୁକ୍ତ ହେବ ।" ଦେବର୍ଷିଙ୍କ ବକ୍ତବ୍ୟ ଶେଷ ହେବାରୁ ଯୁଧିଷ୍ଠିର କହିଲେ "ହେ ଦେବର୍ଷେ! ଦୁର୍ଯ୍ୟୋଧନ ସଦୃଶ ଅନ୍ୟାନ୍ୟ

ଯେଉଁ ମହାରଥୀମାନେ ରଣକ୍ଷେତ୍ରରେ ପୃଷ୍ଠଭଙ୍ଗ ଦେଇ ନାହାନ୍ତି ସେମାନେ କାହିଁକି ଏଠାରେ ଆସନ ପାଇ ନାହାନ୍ତି? ଅତଏବ ଏ ସ୍ଥାନରେ ରହିବା ମୋର ଅଭିପ୍ରାୟ ନୁହେ । ଅଯଥା କାଳବିଳମ୍ବ ନ କରି ମୋର ଭ୍ରାତା ଓ ବନ୍ଧୁମାନଙ୍କ ସ୍ଥାନ ଦେଖାଇଦେଲେ ମୁଁ ଚରିତାର୍ଥ ହେବି ।"

ତତ୍ପରେ କନୈକ ଦେବଦୂତଙ୍କ ସହିତ ଯୁଧିଷ୍ଠିର ନିଜର ଅଭୀପ୍ସିତ ସ୍ଥାନକୁ ପ୍ରେରିତ ହେଲେ । ଯାଉଁ ଯାଉଁ ଯୁଧିଷ୍ଠିର ମାର୍ଗରେ ଦେଖିଲେ ସ୍ତୂପୀକୃତ ମୃତଦେହଦ୍ୱାରା ଗନ୍ତବ୍ୟମାର୍ଗ ଅବରୁଦ୍ଧ ହୋଇଅଛି, ଦୁର୍ଗନ୍ଧସେବୀ ମକ୍ଷିକାମାନେ ଦଳ ଦଳ ହୋଇ ସମସ୍ତ ସ୍ଥାନ ଅନ୍ଧକାରମୟ କରିଅଛନ୍ତି, କୃଷ୍ଣକାୟ ବାୟସମାନେ ଚଞ୍ଚୁଘାତଦ୍ୱାରା ଗଳିତମାଂସ ଛିନ୍ନଭିନ୍ନ କରି ଖାଉଅଛନ୍ତି । କିଛି-କଷ୍ଟରେ କିଛିଦୂର ଅଗ୍ରସର ହୁଅନ୍ତେ ସହସା ଗୋଟିଏ ଗଭୀର ପ୍ରଶସ୍ତ ଗହ୍ୱରଦ୍ୱାର ଉନ୍ମୁକ୍ତ ହେଲା । ସେହି ଗହ୍ୱର ମଧ୍ୟରୁ କାତର କରୁଣୋକ୍ତି ଶୁଣାଗଲା "ହେ ଧର୍ମନନ୍ଦନ! ଆପଣ ଏହିଠାରେ କିଛିକ୍ଷଣ ଦଣ୍ଡାୟମାନ ରହନ୍ତୁ । ଆପଣଙ୍କ ଆଗମନ ଯୋଗୁଁ ସୁଗନ୍ଧ ସମୀରଣ ପ୍ରବାହିତ ହୋଇ ଅମ୍ଭମାନଙ୍କର ତାପିତପ୍ରାଣ ଶୀତଳ କରୁଅଛି । ଏଥିପୂର୍ବରୁ ଯେଉଁ ମର୍ମନ୍ତୁଦ ଯନ୍ତ୍ରଣା ଅନୁଭବ କରୁଥିଲୁଁ ତାହା ପ୍ରକାଶ କରିବାକୁ ଅମ୍ଭମାନଙ୍କର ଶକ୍ତି ନାହିଁ ।"

ଯୁଧିଷ୍ଠିର ଏପରି ଖେଦୋକ୍ତି ଶୁଣି ସେହି ସ୍ଥାନରେ ଦଣ୍ଡାୟମାନ ହୋଇ ପଚାରିଲେ "ଆପଣମାନେ କିଏ? କେହେତୁ ଏହି ଭୟାବହ ସ୍ଥାନରେ ଅବସ୍ଥାନ କରୁଅଛନ୍ତି?" ଯୁଧିଷ୍ଠିରଙ୍କ ପ୍ରଶ୍ନ ଶେଷ ନ ହେଉଣୁ ଶୁଣାଗଲା 'ମୁଁ ଭୀମ' 'ମୁଁ ଦ୍ରୌପଦୀ' 'ମୁଁ ନକୁଳ' ଏବଂ 'ଅମ୍ଭେମାନେ ସ୍ୱକୃତ ଦୁଷ୍କର୍ମର ପରିଣାମ ଭୋଗ କରୁଅଛୁଁ ।' ଯୁଧିଷ୍ଠିର ଆତ୍ମୀୟମାନଙ୍କର ତାଦୃଶ ବ୍ୟାକୁଳତା ଦେଖି ଚିନ୍ତାକଲେ "କି ବିଡମ୍ବନା! ପାପୀ ଦୁର୍ଯୋଧନ ଦେବଲୋକରେ ପୂଜା ପାଇଲା, ଅଥଚ ମୋହର ଆତ୍ମୀୟମାନେ ପରମଧାର୍ମିକ, ସତ୍ୟବାଦୀ, ଶାସ୍ତ୍ରପାରଦର୍ଶୀ ଓ ସ୍ୱଧର୍ମନିରତ ହୋଇ ନରକର ତୀବ୍ର ଯନ୍ତ୍ରଣା ଭୋଗ କରୁଅଛନ୍ତି । ଓଃ! ଏ ସ୍ୱର୍ଗରାଜ୍ୟର ବିଚାର କି ଅଦ୍ଭୁତ! ଯାହାହେଉ ମୋ ଯୋଗେ ଯଦି ମୋର ଆତ୍ମୀୟଗଣ ସୁଖଶାନ୍ତି ଉପଭୋଗ କରୁଅଛନ୍ତି, ତେବେ ଏହି ସ୍ଥାନ ମୋ

ପକ୍ଷରେ ଶ୍ରେୟସ୍କର ।” ତତ୍ପରେ ଦେବଦୂତଙ୍କୁ ସମ୍ବୋଧନ କରି କହିଲେ “ଭଦ୍ର! ମୁଁ ଏହି ସ୍ଥାନରେ ରହିବା ଶ୍ରେୟସ୍କର ମନେକରେଁ; ଅତଏବ ଦେବଗଣଙ୍କ ନିକଟରେ ଉପସ୍ଥିତ ହୋଇ ସେମାନଙ୍କୁ ଏହି ସଂବାଦ ଦିଅ ।”

ଦୂତ ମୁଖରୁ ଏହି ସଂବାଦ ଶୁଣି ଇନ୍ଦ୍ରାଦି ଦେବଗଣ ଯୁଧିଷ୍ଠିରଙ୍କ ନିକଟକୁ ଗମନକଲେ । ସେମାନଙ୍କର ଆଗମନ ଦ୍ୱାରା ନରକର ତାବତୀୟ ସ୍ଥାନ ଆଲୋକରଶ୍ମିରେ ବିଭୂଷିତ ହେଲା । ମୃଦୁମନ୍ଦ ସମୀରଣ ପାରିଜାତକୁସୁମସୌରଭ ଆହରଣ କରି ପ୍ରବାହିତ ହେଲା । ବୃକ୍ଷମାନେ ପତ୍ର ପୁଷ୍ପ ଫଳ ଦ୍ୱାରା ସୁଶୋଭିତ ହେଲେ । ଯେଉଁ ନରକ ଅନବରତ ଭୀଷଣାକାରରେ ବିଦ୍ୟମାନ ଥିଲା ତାହା ସ୍ୱର୍ଗୀୟ ମାଧୁରିମାରେ ପୂର୍ଣ୍ଣ ହେଲା । ଦେବରାଜ ଯୁଧିଷ୍ଠିରଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ “ମହାରାଜ! ଆପଣଙ୍କର ପରୀକ୍ଷା ଶେଷ ହୋଇଅଛି; ବର୍ତ୍ତମାନ ପରମସିଦ୍ଧି ଓ ଅକ୍ଷୟ ଯଶ ଲାଭ କରିଅଛନ୍ତି । ପୂର୍ବେ ଆପଣ ଅସ୍ତ୍ରଗୁରୁ ଦ୍ରୋଣାଚାର୍ଯ୍ୟଙ୍କ ନିକଟରେ 'ନର ହେଉ ବା କୁଞ୍ଜର ହେଉ, ଅଶ୍ୱତ୍ଥାମା ହତ' ଏହା କହି ସତ୍ୟର ଯାହାକିଛି ଅପଲାପ କରିଥିଲେ ତାହାର ପ୍ରାୟଶ୍ଚିତ୍ତସ୍ୱରୂପ ନରକଦର୍ଶନ ହୋଇଗଲା । ଆପଣଙ୍କର ଆତ୍ମୀୟ ସ୍ୱଜନମାନେ ନରକ ଯନ୍ତ୍ରଣାରୁ ମୁକ୍ତିଲାଭ କରି ବର୍ତ୍ତମାନ ସ୍ୱର୍ଗରାଜ୍ୟରେ ବିହାର କରୁଅଛନ୍ତି ।”

ତତ୍ପରେ ଧର୍ମଦେବ ପୁତ୍ରଙ୍କୁ ସମ୍ବୋଧନ କରି କହିଲେ “ବତ୍ସ! ମୁଁ ତିନିଥର ତୁମ୍ଭର ହୃଦୟ ପରୀକ୍ଷା କରିଅଛି । ପ୍ରଥମତଃ ଦ୍ୱୈତବନରେ ଯେଉଁ ଦୁରୂହ ପ୍ରଶ୍ନ କରିଥିଲି, ତୁମ୍ଭେ ଅନାୟାସରେ ତାହାର ସଦୁତ୍ତର ପ୍ରଦାନ କରିଅଛ । ଦ୍ୱିତୀୟତଃ ମହାପ୍ରସ୍ଥାନ ସମୟରେ ଶ୍ୱାନରୂପରେ ତୁମ୍ଭର ସ୍ୱର୍ଗଗମନର ପ୍ରତିବନ୍ଧକ ହୋଇଥିଲି, କିନ୍ତୁ ତଦ୍ୱାରା ତୁମ୍ଭର ପୁଣ୍ୟଶୀଳ ଚରିତ୍ର ପରିବର୍ତ୍ତିତ ହୋଇ ନ ଥିଲା । ତୃତୀୟତଃ ଦେଖିଲି ତୁମ୍ଭେ ଅପାର୍ଥିବ ସୁଖ ପରିତ୍ୟାଗ କରି ଆତ୍ମୀୟ ସ୍ୱଜନମାନଙ୍କର ଦୁଃଖାପନୋଦନ ନିମନ୍ତେ ସତତ ବ୍ୟାକୁଳ ହେଉଅଛ । ଅତଏବ ତୁମ୍ଭର ସତ୍ୟନିଷ୍ଠା, ଧର୍ମପରାୟଣତା, ଇନ୍ଦ୍ରିୟସଂଯମ ଓ ମହାନୁଭବତାରେ ମୁଁ ଯାରପରନାସ୍ତି ପ୍ରୀତ ହୋଇଅଛି । ତୁମ୍ଭପରି ବୀରପୁତ୍ର

ପାଇ ମୁଁ ନିଜକୁ ପରମ ଭାଗ୍ୟବାନ୍ ଓ ଗୌରବାନ୍ୱିତ ମନେକରୁଅଛି । ବର୍ତ୍ତମାନ ତୁମ୍ଭେ ହୃଷ୍ଟମନରେ ଭ୍ରାତା, କୁଟୁମ୍ବ, ଜ୍ଞାତି, ବନ୍ଧୁ ଓ ପରିଜନଙ୍କ ସହିତ ସ୍ୱର୍ଗ ଭୋଗ କର ।"

ତତ୍ପରେ ଯୁଧିଷ୍ଠିର ସୁରକୁଲେଣ୍ୟ ତ୍ରୈଲୋକପାବନୀ ମନ୍ଦାକିନୀ-ଜଳରେ ଅବଗାହନ କଲାକ୍ଷଣି ଦିବ୍ୟବପୁ ଧାରଣ କଲେ; ମାୟା, ମୋହ, ଶୋକ ପ୍ରଭୃତି ଯେଉଁସବୁ ପାର୍ଥିବଭାବ ତାହାଙ୍କ ହୃଦୟକୁ ସ୍ପର୍ଶ କରିଥିଲା ସେ ସମସ୍ତ ଅନ୍ତର୍ହିତ ହେଲା । ସେ ଦେବଗନ୍ଧର୍ବମାନଙ୍କ ଦ୍ୱାରା ପରିବୃତ ହୋଇ ପିତାମାତା, ଜ୍ଞାତିବନ୍ଧୁ, ଆତ୍ମୀୟସ୍ୱଜନଙ୍କ ସହିତ ସେହି ଅମରଲୋକରେ ବାସ କଲେ ।



Printed at the Orissa Mission Press, by Rev. R. J. Grundy,
for the Publishers.

## ଗଣିତ :—

ଏହାର ଉତ୍ତରମାଳା (କେବଳ ଶିକ୍ଷକମାନଙ୍କ ନିମନ୍ତେ) ... ... ୦ • ୶

ନିମ୍ନପ୍ରାଥମିକ ଅଙ୍କପୁସ୍ତକ (୩ୟ ଓ ୪ର୍ଥ ମାନ ନିମନ୍ତେ) ରାୟ ମଧୁସୂଦନ ରାଓ ବାହାଦୁର କୃତ ୦ • ।/

ଏହାର ଉତ୍ତରମାଳା (କେବଳ ଶିକ୍ଷକମାନଙ୍କ ନିମନ୍ତେ) ୦ • /

ଓଡ଼ିଆ ପାଟୀଗଣିତ (୫ମ ଓ ୬ଷ୍ଠ ମାନ ନିମନ୍ତେ) ... ମଧୁସୂଦନ ଦାଶ, ବି. ଏ. ଙ୍କ କୃତ ୦ • ।/

ଏହାର ଉତ୍ତରମାଳା (କେବଳ ଶିକ୍ଷକମାନଙ୍କ ନିମନ୍ତେ) ... ୦ • • /

ଅଙ୍କପୁସ୍ତକ (୩ୟ ଓ ୪ର୍ଥ ମାନ ନିମନ୍ତେ) ମଧୁସୂଦନ ଦାଶ, ବି. ଏ. ଙ୍କ କୃତ ୦ • ।

ଏହାର (୫ମ ଓ ୬ଷ୍ଠ ମାନ ନିମନ୍ତେ) ଏହାର ଏହାର ୦ • ।୶୬

୩ୟ, ୪ର୍ଥ ଏବଂ ୫ମ ୬ଷ୍ଠ ମାନ ନିମନ୍ତେ ଅଙ୍କ ପୁସ୍ତକଦ୍ୱୟର ଉତ୍ତରମାଳା, ଶ୍ରୀମଧୁସୂଦନ ଦାଶ, ବି.ଏ. (?)ଙ୍କ କୃତ ... ... ୦ • ୶

ଓଡ଼ିଆ ନବବିଧାନ ଜ୍ୟାମିତି (୩ୟ ଓ ୪ର୍ଥ ମାନ ନିମନ୍ତେ) ରେଭ୍. ଏ. ସିମ୍ସ୍, ଏମ୍. ଏ. ଙ୍କ କୃତ ୦ • ।/

ଔପପତ୍ତିକ ଏବଂ ବ୍ୟାବହାରିକ ଜ୍ୟାମିତି (୫ମ ଓ ୬ଷ୍ଠ ମାନ ନିମନ୍ତେ) ଏହାର ଏହାର ୦ • ୩

ଓଡ଼ିଆ ନବବିଧାନ ପରିମିତି (୪ର୍ଥ ମାନ ନିମନ୍ତେ) ଏହାର ଏହାର ୦ • ୶

ଏହାର (୫ମ ଓ ୬ଷ୍ଠ ମାନ ନିମନ୍ତେ) ଏହାର ଏହାର ୦ • ୩

* ସ୍କୁଲ ଜ୍ୟାମିତି (୧ମ ଓ ୨ୟ ଭାଗ) ... ହଲ୍ ଏବଂ ଷ୍ଟିଭେନ୍ସ କୃତ (୫ମ ଓ ୬ଷ୍ଠ ମାନ ନିମନ୍ତେ) ... ୦ • ୩/

## ଇତିହାସ ଓ ଭୂଗୋଳ:—

* ଭାରତରେ ଇଂରେଜ ସରକାର ... ଜନ୍ ମାର୍ଶମ୍ୟାନ୍ କର୍ତ୍ତୃକ ଇଂରାଜୀ ଗ୍ରନ୍ଥର ଅନୁବାଦ ... ... ... ... ୦ • ।୶

ନିମ୍ନପ୍ରାଥମିକ ଭାରତଇତିହାସ (୩ୟ ଓ ୪ର୍ଥ ମାନ ନିମନ୍ତେ) ... ମଧୁସୂଦନ ଦାଶ, ବି. ଏ. ଓ ହରିହରଚନ୍ଦ୍ର ଦତ୍ତ, ବି. ଏ.ଙ୍କ କୃତ... ୦ • ୩

ମଧ୍ୟଓଡ଼ିଆ ଭାରତଇତିହାସ (୫ମ ଓ ୬ଷ୍ଠ ମାନ ନିମନ୍ତେ) ଏହାର ଏହାର ୦ • ।/

ଭାରତବର୍ଷର ଇତିହାସ (୨ୟ ଭାଗ) ... ମଧୁସୂଦନ ଦାଶ, ବି. ଏ.ଙ୍କ କୃତ ୦ • ।୶

ଓଡ଼ିଆ ପ୍ରାଥମିକ ବିଦ୍ୟାଳୟ-ଭୂଗୋଳପାଠ (୩ୟ ଓ ୪ର୍ଥ ମାନ ନିମନ୍ତେ) ... ସି. ମଉସନ୍, ଏମ୍. ଏ. ଏଲ୍. ଏଲ୍. ବି. ଙ୍କ କୃତ... ୦ • ୩୶

ଓଡ଼ିଆ ବିଦ୍ୟାଳୟ-ଭୂଗୋଳପାଠ (୫ମ ମାନର) ଇଉରୋପିଅ ଏହାର... ୦ • ।୶

ଏହାର ଏହାର (୬ଷ୍ଠ ମାନର) ଆଫ୍ରିକା, ଅଷ୍ଟ୍ରେଲେସିଆ ଓ ଆମେରିକା ଏହାର ଏହାର ୦ • ୯

